# ଭିକାରୀ ଚରଣ ପଟ୍ଟନାୟକ

ଲେଖକ :
ଡକ୍ଟର ଶ୍ରୀଚରଣ ମହାନ୍ତି

ପ୍ରକାଶକ :
ଓଡ଼ିଶା ସାହିତ୍ୟ ଏକାଡେମୀ
ସଂସ୍କୃତିଭବନ, ଭୁବନେଶ୍ୱର-୭୫୧୦୧୪.

ପ୍ରଥମ ପ୍ରକାଶ : ୨୦୦୦

ମୁଦ୍ରଣ :
ଏକ୍‌ସେଲ ଗ୍ରାଫିକ୍ସ
କଳ୍ପନା ରୋଡ୍, ଭୁବନେଶ୍ୱର-୭୫୧୦୧୪.

ମୂଲ୍ୟ : ଚାଳିଶ ଟଙ୍କା

**Bhikari Charan Pattnaik**

**Written by :**
Dr. SriCharan Mohanty

**Published by :**
Orissa Sahitya Akademy
Sanskruti Bhawan,
Bhubaneswar-751014.

**First Edition : 2000**

**Printed At :**
Excel Graphics,
Kalpana Road,
Bhubaneswar-751014.

**Price : Rs.40.00**

**ISBN-81-7586-053-7**

# ଅଗ୍ରଲେଖ

ଶିକ୍ଷାର ଅଭିବୃଦ୍ଧି ଫଳରେ ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟ ଓ ବିଂଶ ଶତାବ୍ଦୀର ଆଦ୍ୟ ପର୍ଯ୍ୟାୟରେ ଯେଉଁ ବୁଦ୍ଧିଜୀବୀ ଶ୍ରେଣୀ ଓଡ଼ିଶାର ସାରସ୍ୱତ ନେତୃତ୍ୱ ନେବାରେ ଦକ୍ଷତା ହାସଲ କରିଥିଲେ, ଭିକାରୀ ଚରଣ ସେମାନଙ୍କ ମଧ୍ୟରେ ଥିଲେ ଅନ୍ୟତମ । ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ମଧ୍ୟ ଏହି ବିଦ୍ୱତ୍‌ଗୋଷ୍ଠୀଙ୍କ ଭୂମିକା ଗୌଣ ନଥିଲା । ଓଡ଼ିଶା ସାହିତ୍ୟ, ସଂସ୍କୃତି ଓ ସାମ୍ବାଦିକତା ସହିତ ଓଡ଼ିଶାରେ କୁଟୀର ଶିଳ୍ପର ପ୍ରସାରଣ କ୍ଷେତ୍ରରେ ତାଙ୍କର ବଳିଷ୍ଠ ଭୂମିକା ଥିଲା । ଓଡିଆ ନାଟକର ଆଦି - ପର୍ବର ଜଣେ ସଫଳ ନାଟ୍ୟକାର ଭାବରେ ସମାଜ ଓ ରାଜନୀତି ସହିତ ସଂଶ୍ଳିଷ୍ଟ ଜଣେ ସ୍ୱର୍ଶକାତର କବି ଭାବରେ ତଥା ଜଣେ ମନନଶୀଳ ପ୍ରାବନ୍ଧିକ ହିସାବରେ ଭିକାରୀ ଚରଣ ଓଡିଆ ସାହିତ୍ୟର ଗବେଷକ ମାନଙ୍କଠାରୁ ଯେଉଁ ପ୍ରକାର ଆଲୋଚନା ଓ ବିଶ୍ଳେଷଣ ପାଇବା କଥା, ତାହା ଏ ପର୍ଯ୍ୟନ୍ତ ତାଙ୍କ ବିୟୋଗର ବହୁ ବର୍ଷପରେ ମଧ୍ୟ ସଂଭବ ହୋଇପାରିନାହିଁ ।

ଭିକାରୀ ଚରଣଙ୍କ ଜୀବନୀ ଓ କୃତିତ୍ୱ ସଂପର୍କରେ ରଚନା କରାଯାଇଥିବା ଏହି ମନୋଗ୍ରାଫର ଲେଖକ ହେଉଛନ୍ତି ଡକ୍ଟର ଶ୍ରୀଚରଣ ମହାନ୍ତି । ଜଣେ ସଫଳ ଶିଶୁସାହିତ୍ୟିକ ଓ ଗୀତି କବି ଭାବରେ ସମାଜରେ ତାଙ୍କର ସ୍ୱତଂତ୍ର ସ୍ଥାନ ରହିଛି । ସେଥିପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କୁ ଧନ୍ୟବାଦ ଦେଉଛି । ପୁସ୍ତକଟି ଭିକାରୀ ଚରଣଙ୍କ ସଂପର୍କରେ ବ୍ୟାପକ ଆଲୋଚନା ଓ ଗବେଷଣାର ଦ୍ୱାର ଉନ୍ମୋଚନ କରିବା ସହିତ ଓଡ଼ିଶାର ଅଗଣିତ ପାଠକ ପାଠିକାଙ୍କ ନିକଟରେ ତାଙ୍କ ସଂପର୍କରେ ଏକ ସ୍ୱଷ୍ଟଚିତ୍ର ଆଙ୍କି ଦେବାରେ ସମର୍ଥ ହେବ ବୋଲି ମୋର ଆଶା ।

ଅଶ୍ୱିନୀ କୁମାର ମିଶ୍ର
ସଂପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ

# ମନୋଗ୍ରାଫ୍ ସଂପର୍କରେ

ନାଟ୍ୟକାର ତଥା କବି ଭିକାରୀ ଚରଣ ଦୀର୍ଘ ଛଅଟି ଦଶକ ଧରି ଓଡ଼ିଆ ସାହିତ୍ୟରେ ଲେଖନୀ ଚାଳନା କରିଥିଲେ । ଦଶଖଣ୍ଡ ନାଟକ, ପ୍ରହସନ ଲେଖିଥିଲେ । ସବୁଗୁଡ଼ିକ ସେତେବେଳେ ବିଭିନ୍ନ ସ୍ଥାନରେ ମଞ୍ଚସ୍ଥ ହୋଇଥିଲା । ଅନେକ କବିତା ରଚନା କରିଥିଲେ, ପୁସ୍ତକ ଭାବରେ ତାହା ମୁଦ୍ରିତ ହୋଇଥିଲା । ଧନ୍ଦାମୂଳକ ଶିକ୍ଷା ପାଇଁ ଅନେକ ବୈଷୟିକ ପୁସ୍ତକ ରଚନା କରିଥିଲେ, ଓଡ଼ିଶା ବାହାରେ ତାହା ଅନୁବାଦ ହୋଇ ଆଦର ଲାଭ କରିଥିଲା । ପ୍ରାଥମିକ ଶିକ୍ଷାର ଉନ୍ନତି ପାଇଁ ପୁସ୍ତକ ରଚନା କରିଥିଲେ, ପାଠ୍ୟ ପୁସ୍ତକ ଭାବରେ ଓ ଶିକ୍ଷକ ସହାୟକ ପୁସ୍ତକ ଭାବରେ ତାହା ସିଲାବସ୍‌ର ଅନ୍ତର୍ଭୁକ୍ତ ହୋଇଥିଲା । ସେ ସମୟର ନାଆଁକରା ପତ୍ରିକାରେ ତାଙ୍କର ପ୍ରବନ୍ଧ ଓ କବିତା ପ୍ରକାଶ ପାଉଥିଲା । ତାଙ୍କ ସମୟରେ ଲାଟ ସାହେବଙ୍କ ଠାରୁ ଆରମ୍ଭ କରି ଜାତୀୟ ସଂଗ୍ରାମର ବହୁବ୍ୟକ୍ତି ତାଙ୍କ ଘର(ଓଡ଼ିଶା ପୁଅର ଇଣ୍ଡଷ୍ଟ୍ରୀ କଟେଜ)କୁ ଆସୁଥିଲେ । ଜାତିର ଜନକ ମହାତ୍ମା ଗାନ୍ଧୀ ବି ତାଙ୍କ ଘରକୁ ଆସି ପରିଦର୍ଶନ ପୁସ୍ତିକାରେ ଦିପଦ ଲେଖି ଦେଇ ଯାଇଥିଲେ । ମାତ୍ର ପରବର୍ତ୍ତୀ ପିଢ଼ି ଓଡ଼ିଶାର ଲୋକମାନଙ୍କ ପାଖରେ ସେ ଯେପରି ଅନାଲୋଚିତ ହୋଇ ରହିଗଲେ, ଆଢୁଆଳରେ ରହିଗଲେ । ବାଣୀପୀଠ 'ଉତ୍କଳ ସାହିତ୍ୟ ସମାଜ', ଶ୍ରୀରାମଚନ୍ଦ୍ର ଭବନ କଟକର ଦ୍ୱାର ମୁହଁରେ ଘର ଥାଇବି ସେ ଲୋକଙ୍କ ପାଖରେ ମୁହଁଛପାଦେଇ ଲୁଚିଗଲେ । କାହିଁକି ଲୁଚିଗଲେ ଓ କିପରି ଲୁଚିଗଲେ, ତାକୁ ଚିନ୍ତାଶୀଳ ବୁଦ୍ଧିଜୀବୀମାନେ ଅନୁସଂଧାନ କରିବା ଆବଶ୍ୟକ ।

ଆଦ୍ୟ ଜୀବନରେ ତାଙ୍କ ପ୍ରତିଭା ବିକଶି ଉଠିଥିଲା । ନୂଆବାଟ ଖୋଜିବା, ନୂଆ ବାଟ ତିଆରି କରିବା ଯେପରି ତାଙ୍କର ନିଶା ହୋଇଯାଇଥିଲା । କଉଡ଼ିଆ ପେଶାରେ ହିଁ ତାଙ୍କର ତୃପ୍ତି । ଲେଖିବା ତାଙ୍କର ନିଶା, ତାପାଇଁ ଖର୍ଚ୍ଚକୁ ପରୁଆ ନଥିଲା । ବହି ଛପାଉଥିଲେ, ବିକ୍ରିବଟାରୁ ପଇସା ପାଉଥିଲେ କି ନାହିଁ ଜଣାନାହିଁ; ମାତ୍ର ଗୋଟିଏ ବହିକୁ ଛାଡ଼ି ସେ ସବୁ ବହି ନିଜେ, ନିଜ ବ୍ୟୟରୁ ଛପାଇଥିଲେ । ସମାଜସଂସ୍କାର ପାଇଁ ହାତରୁ ପଇସା ଖର୍ଚ୍ଚ କରି ଜଣେ ଭଦ୍ରଲୋକଙ୍କ ଝିଅ ବାହାଘରରେ 'କରଣ ସାଆନ୍ତଙ୍କ ଢମ' ନାମରେ ହଜାର ଖଣ୍ଡ ବହି ଛପାଇ ବାଣ୍ଟି ଦେଇ ଗୋଟିଏ ଚହଳ ପକାଇ ଦେଇଥିଲେ ।

କଡ଼ିକିଆ ଲୋକଙ୍କ ପାଖରେ ତାଙ୍କର କଉଡ଼ିଆ ବେଉଷା । ଧନ୍ଦାରୁ ଟଙ୍କା ଆଦାୟ କରିବାର ଫନ୍ଦା ମାଲୁମ ନଥିଲା । ଓକିଲାତି ପେଶାରେ ପଶି ବି ମହକିଲମାନଙ୍କୁ ବୁଝାଇ ସୁଝାଇ ରଫାନାମା ଲେଖାଉଥିଲେ । ଓକିଲ ହୋଇ ବି ଓକିଲମାନଙ୍କର ଦୋଷକୁ ଦାଣ୍ଡରେ ପକାଇ ହାଣ୍ଡିରେ ଗଡ଼ାଗଡ଼ାଉଥିଲେ । କରଣ କୁଳରେ ଜାତ ହୋଇ ବି କରଣିଆ ଘରର ବୃଥା ଅହମିକାକୁ, ଢମ ପଣିଆକୁ, ଯଉତୁକ ନିଶାକୁ କୌତୁକ ଭାବରେ ଉପସ୍ଥାପନ କରୁଥିଲେ ।

ଓଡ଼ିଆ ଲୋକଙ୍କ ପାଇଁ ତାଙ୍କ ମନ ଘାରି ହେଉଥିଲା । ବୃଥା ଗାରିମା ଗାଇଲେ ପେଟପୂରେନା । କାମ ନକରି ଢମ ଦେଖାଇଲେ ଓଡ଼ିଆ ଜାତି ଉଠିବନି । ଶିଳ୍ପ ବାଣିଜ୍ୟ ନ କଲେ ଓଡ଼ିଆ ଜାତିର ଉନ୍ନତି ସମ୍ଭବ ହୋଇପାରିବନି । ବଡ଼ ଶିଳ୍ପ ପାଇଁ ପୁଞ୍ଜି ନାହିଁ । ଲୋକଙ୍କ ଅବସ୍ଥା ବଦଳାଇବାକୁ ହେଲେ, ଅବସର ସମୟକୁ କାମରେ ଲଗାଇବାକୁ ହେଲେ 'ଗୃହଶିଳ୍ପ' ହିଁ ଏକମାତ୍ର ପନ୍ଥା । ଏଇ ଚିନ୍ତାକୁ ସେ ଜୀବନଯାକ ଗୁଣି ହୋଇଛନ୍ତି ।

ସ୍ଥାନୀୟ ଲୋକଙ୍କ ଉନ୍ନତି ପାଇଁ ଅସହଯୋଗ ନୁହେଁ ସହଯୋଗ କରିବାକୁ ହେବ । ଇଂରେଜୀ ଲୋକଙ୍କୁ ତୁଷ୍ଟ କରିବାକୁ ହେବ । ଭିକାରୀ ଚରଣ ଅନ୍ୟ କେତେକଙ୍କ ସହିତ ସେଇଆ କରୁଥିଲେ । ଇଂରେଜ ଶାସନ ତରଫରୁ ରାୟସାହେବ, ରାୟ ବାହାଦୁର, କାଇଜର-ଇ-ହିନ୍ଦ ଉପାଧି ପାଇଥିଲେ ମାତ୍ର ତାଙ୍କର ଲକ୍ଷ୍ୟ ଥିଲା ଓଡ଼ିଆ ଜାତି ଉପରେ । ମାର୍ଗ ଯାହାହେଉ, ଲକ୍ଷ୍ୟ ପୂରଣ ହେବା ଦରକାର । ସାଧାରଣ ଲୋକଙ୍କ ପାଇଁ ସେ ଚିନ୍ତିତ ଥିଲେ । ପରହାତକୁ ଅନାଇ ରହିଲେ ଭାତ ମିଳେ ନା ; ନିଜକୁ ଗୋଡ଼ରେ ଠିଆ ହେବାକୁ ହେବ । ତେବେ ଯାଇ ଜାତି ଉଠିବ, ଦେଶ ଆଗେଇବ । ଲୋକଙ୍କ ମୁହଁରେ ହସ ଖେଳି ଉଠିଲେ ଦେଶ ହସି ଉଠିବ ।

ଏଭଳି ମନୋଭାବର ଜଣେ ବ୍ୟକ୍ତିଙ୍କ ସଂପର୍କରେ ମନୋଗ୍ରାଫ୍ ଲେଖିବା ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀର କର୍ତ୍ତୃପକ୍ଷ ମୋତେ ବରାଦ ଦେଇଥିଲେ । ଦୁଇବର୍ଷ ଧରି ସେ ସଂପର୍କରେ କାମ କରିଛି । ସବୁଠାରୁ ବିଚିତ୍ର କଥା ଭିକାରୀ ଚରଣଙ୍କ ବହି ପଢୁଥିଲେ ଅନେକ ଲୋକ ମାତ୍ର ଭବିଷ୍ୟତ ପାଇଁ ସାଇତି ରଖୁଥିଲେ କମ୍ ଲୋକ । ସେ ନିଜେ ନିଜ ବହିର ପ୍ରକାଶକ/ବିତରକ ଥିବାରୁ ତାଙ୍କର ସମଗ୍ର ରଚନା ଠିକ୍ ଭାବରେ ରଖାଯାଇ ପାରି ନଥିଲା । ଭିକାରୀ ଚରଣଙ୍କ ସଂପର୍କରେ ମନୋଗ୍ରାଫ୍ ପ୍ରସ୍ତୁତ ସମୟରେ ତାଙ୍କ ସମ୍ପର୍କରେ ତଥ୍ୟ ପାଇବା ଓ ତାଙ୍କ ପୁସ୍ତକ

ସଂଗ୍ରହ କରିବା ସମସ୍ୟା ଦେଖା ଦେଇଥିଲା । ଅଧିକାଂଶ ଲାଇବ୍ରେରୀରେ ତାଙ୍କ ପୁସ୍ତକ ମିଳିଲାନି, କେତେକ ସ୍ଥାନରେ ସାମାନ୍ୟ ମିଳିଲା । ଭିକାରୀ ଚରଣଙ୍କ ପରିବାରର ଲୋକମାନେ ହିଁ ଶେଷରେ ଏ ପୁସ୍ତକ ଯୋଗାଇବାରେ ସହାୟତା କଲେ । ସେମାନେ ହେଲେ ଭିକାରୀ ଚରଣଙ୍କ ସାନପୁଅ ଶ୍ରୀ ରଘୁନାଥ ପଟ୍ଟନାୟକ, (ବର୍ତ୍ତମାନ ସ୍ୱର୍ଗତ), ଭିକାରୀ ଚରଣଙ୍କ ଝିଅର ପୁଅ ନାତି ଇଂଜିନିଅର ହେମନ୍ତ କୁମାର ଦାସ, ନାତି ଶ୍ରୀ ଉମାକାନ୍ତ ପଟ୍ଟନାୟକ, ପ୍ରଫେସର ରବୀନ୍ଦ୍ର କୁମାର ପଟ୍ଟନାୟକ, ନାତୁଣୀ ଶ୍ରୀମତୀ କିରଣବାଳା ପଟ୍ଟନାୟକ, ପୁତୁରା ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି, ଝିଆରୀ ଶ୍ରୀମତୀ ସୁରେଖା ମହାନ୍ତି, ଝିଆରୀ ଜ୍ୱାଇଁ ଶ୍ରୀ ଉମାଚରଣ ମହାନ୍ତି, ନାତି ଶ୍ରୀ ସତ୍ୟନାରାୟଣ ମହାନ୍ତି ପୁସ୍ତକ ଯୋଗାଇ ଦେବା ସଙ୍ଗେସଙ୍ଗେ ଜୀବନୀ ସଂକଳନ ପାଇଁ ତଥ୍ୟ ଯୋଗାଇ ଦେଇଛନ୍ତି । ସେମାନଙ୍କୁ ମୁଁ ଗଭୀର କୃତଜ୍ଞତା ଜଣାଉଛି ।

ଏହି କାର୍ଯ୍ୟକ୍ରମର ଆରମ୍ଭ ପୂର୍ବରୁ ଭିକାରୀଚରଣଙ୍କ ବଡ଼ ନାତୁଣୀବୋହୂ ଶ୍ରୀମତୀ ବନ୍ଦନା ପଟ୍ଟନାୟକ ଭିକାରୀଚରଣଙ୍କ ସଂପର୍କରେ ବିଧିବଦ୍ଧ କାର୍ଯ୍ୟକ୍ରମ ପାଇଁ ଉଦ୍ୟମ ଚଳାଇଥିଲେ । ରାଉରକେଲାର ବିଶିଷ୍ଟ ସାଂସ୍କୃତିକ ଅନୁଷ୍ଠାନ 'ପ୍ରଗତି ଉତ୍କଳ ସଂଘ' ଏ କାର୍ଯ୍ୟପାଇଁ ଅକୁଣ୍ଠ ସହାୟତା ପ୍ରଦାନ କରିଥିବାରୁ ମୁଁ ଧନ୍ୟବାଦ ଓ କୃତଜ୍ଞତା ଜଣାଉଛି ।

ଏଭଳି କାର୍ଯ୍ୟକୁ ସାକାର କରିବା ପାଇଁ ମୋର ବଂଧୁ ଓ ବିଶିଷ୍ଟ ସମାଲୋଚକ ଶ୍ରୀ ଦେବେନ୍ଦ୍ର କୁମାର ଦାଶ, ଅଧ୍ୟାପକ ମ୍ୟୁନିସିପାଲ କଲେଜ, ବନ୍ଧୁ ଡକ୍ଟର ଗୌରାଙ୍ଗ ଚରଣ ଦାଶ, ଅନୁଗୁଳ ସରକାରୀ ମହାବିଦ୍ୟାଳୟଙ୍କ ପରାମର୍ଶକୁ ମୁଁ ଧନ୍ୟବାଦ ସହ ସ୍ୱୀକାର କରୁଛି ।

ଓଡ଼ିଶା ସାହିତ୍ୟ ଏକାଡେମୀର ସଚିବ ସୁସାହିତ୍ୟିକ ବନ୍ଧୁ ଡକ୍ଟର ହରପ୍ରସାଦ ପରିଚ୍ଛା ପଟ୍ଟନାୟକଙ୍କ ଉତ୍ସାହ ଓ ତାଗିଦା ନ ପାଇଥିଲେ ବହି ଦାଖଲରେ ଆହୁରି ବିଳମ୍ବ ହୋଇଥାନ୍ତା । ସାହିତ୍ୟ ଏକାଡେମୀର କର୍ମକର୍ତ୍ତା ଓ ସଚିବଙ୍କୁ ମୁଁ ଶେଷରେ ଗଭୀର କୃତଜ୍ଞତା ଜଣାଉଛି ।

ଉତ୍କଳ ଦିବସ-୧୯୯୮ ଡକ୍ଟର ଶ୍ରୀଚରଣ ମହାନ୍ତି

# ସୂଚୀ-ପତ୍ର

## ପ୍ରଥମ ଭାଗ :



## ଦ୍ୱିତୀୟ ଭାଗ :



## ତୃତୀୟ ଭାଗ :

# ପ୍ରଥମଭାଗ

# ଜୀବନୀ

## ନଈ ଏପାରିରୁ ସେପାରି

ହାତ ତିଆରି କଣ୍ଢେଇଟିଏ, ହାତ ତିଆରି ଦରବଟିଏ ଦେଖିଲେ ଆଜି ଲୋକଙ୍କର ମନ କେତେ ଖୁସି ନ ହେଉଛି, କିନ୍ତୁ ଜଣେ ଲୋକ ସାରାଜୀବନ ଏଇ ଦରବ ବିଷୟରେ ଚିନ୍ତା କରିକରି ବିତାଇ ଦେଇଥିଲେ । ସମୟର ପ୍ରତିକୂଳ ଗତି ଅନେକ ସମୟରେ ପ୍ରତିଭାର ପ୍ରଚାର ପ୍ରସାର କ୍ଷେତ୍ରରେ ବାଧକ ହୋଇଥାଏ । ଆଜି ହସ୍ତଶିଳ୍ପ, କୁଟୀର ଶିଳ୍ପ, ଦେଶୀ ବିଦେଶୀ ଲୋକମାନଙ୍କ ଦ୍ୱାରା ଯେପରି ଆଦରଲାଭ କରୁଛି, ଭାରତର ସ୍ୱାଧୀନତା ପୂର୍ବବର୍ତ୍ତୀ କାଳରେ ସେପରି ନଥିଲା । ସେତେବେଳେ ବିଦେଶୀ ଜିନିଷ, କଳ ଜିନିଷର ଆଦର ବହୁତ ଥିଲା । ସ୍ୱାଧୀନତା ଲାଭର କିଛିଦିନ ପରେ ହିଁ ଲୋକମାନେ ପ୍ରକୃତରେ ସ୍ୱଦେଶୀ ଜିନିଷ, ସ୍ଥାନୀୟ ଜିନିଷ ପ୍ରତି ଆଦରଭାବ ପ୍ରକାଶ କଲେ । ଆଗେ ଲୋକଙ୍କର ଚାହିଦା ପୂରଣ କଲାଭଳି ଏ ଦେଶରେ ଯଥେଷ୍ଟ ଜିନିଷ ଉତ୍ପାଦିତ ହେଉନଥିଲା । ଅନେକ ବିଦେଶୀ ଜିନିଷର ବ୍ୟାବହାରିକ ଗୁଣ ଅଧିକ ଥିଲା । ସେଥିପାଇଁ ଲୋକମାନେ ଟିକେଟିକେ କଥାରେ 'ବିଦେଶୀ' ଜିନିଷ ପାଇଁ ଆଗ୍ରହ ପ୍ରକାଶ କରୁଥିଲେ । ଏବେ କିନ୍ତୁ ଲୋକଙ୍କ ମନୋଭାବ ବଦଳିଛି । ଦେଶର ଅବସ୍ଥା ବି ନିଆରା । ଲୋକମାନଙ୍କର କ୍ରୟ କରିବାର ସାମର୍ଥ୍ୟ ବଢ଼ିଛି । ରୁଚି ବି ବଦଳିଛି । ପନିପରିବା ଦୋକାନରୁ ଆରମ୍ଭ କରି ବଡ଼ବଡ଼ ଜିନିଷ ପର୍ଯ୍ୟନ୍ତ ଲୋକମାନେ ସ୍ଥାନୀୟ ଜିନିଷ ପ୍ରତି ଆଦର ପ୍ରକାଶ କରୁଛନ୍ତି । ଆଗେ ଯଦି ଏଇ ଅବସ୍ଥା ଥାଆନ୍ତା, ତେବେ ରାୟ ବାହାଦୁର ଭିକାରୀ ଚରଣ ପଟ୍ଟନାୟକଙ୍କ କଣ୍ଢେଇ ଶିଳ୍ପ ସମେତ ବହୁବିଧ କୁଟୀର-ଶିଳ୍ପ ଭାଙ୍ଗିପଡ଼ି ନଥାନ୍ତା ।

ଭିକାରୀ ଚରଣଙ୍କ ଜନ୍ମ ପରାଧୀନ ଭାରତବର୍ଷର ଏକ ସଂକ୍ଷିକ୍ଷଣରେ, ଉତ୍କଳ ଜନନୀର ଏକ ସଙ୍କଟମୟ କାଳରେ । ନଅଙ୍କ ଦୁର୍ଭିକ୍ଷର କରାଳ ଛାଇ ସେତେବେଳକୁ ଲିଭିଲିଭି ଆସୁଥାଏ । ଉତ୍କଳବାସୀ ଓଡ଼ିଆ ଭାଇଭଉଣୀଙ୍କ ମାଆର ଭାଷା ବହିର ଭାଷା ହେବକି ନାହିଁ ଏ ସମ୍ପର୍କରେ ଏକ କୋକୁଆଭୟ ସୃଷ୍ଟି ହୋଇ ତା'ର ନିରାକରଣ ପାଇଁ କର୍ମବୀରମାନେ ଅଣ୍ଟାଭିଡ଼ି ଲାଗିଥାନ୍ତି । ସ୍ୱଦେଶୀ

ଆନ୍ଦୋଳନର ଚିନ୍ତା ଲୋକମାନଙ୍କ ମଧ୍ୟରେ ଦାନାବାନ୍ଧିବା ଅବସ୍ଥାରେ ଥାଏ । ସେହି ବର୍ଷ ଉତ୍କଳ ଜନନୀଙ୍କର କୋଳ ମଣ୍ଡନ କରି ଭୂମିଷ୍ଠ ହେଲେ ଦୁଇ ବରପୁତ୍ର । ସୁଆଣ୍ଡୋ ଗ୍ରାମରେ ଦୈତାରୀ ଦାଶଙ୍କ ପୁଅ ଗୋପବନ୍ଧୁ, ହୁରାସାହିରେ ସାଧୁଚରଣ ମହାନ୍ତିଙ୍କ ପୁଅ ଭିକାରୀ ଚରଣ । ଦୁଇଜଣଯାକ କେହି କାହାଗୁଣରେ କମ୍ ନୁହଁନ୍ତି । ସନ ୧୮୭୭ ସାଲ ଡିସେମ୍ବର ମାସ ଏକୋଇଶ ତାରିଖ ଦିନ କଟକ ଜିଲ୍ଲା କେନ୍ଦ୍ରାପଡ଼ା ସବ୍‌ଡ଼ିଭିଜନ୍(ଏବେ କେନ୍ଦ୍ରାପଡ଼ା ଜିଲ୍ଲା) ଅନ୍ତର୍ଗତ ଚର୍ଯପୁର ସଂଲଗ୍ନ ହୁରାସାହି ଗ୍ରାମରେ ଭିକାରୀ ଚରଣଙ୍କର ଜନ୍ମ ।

ଆଗେ ଓଡ଼ିଶାରେ ଶିଶୁ ମୃତ୍ୟୁହାର ବହୁତ ବେଶି ଥିଲା । ଅଶିକ୍ଷା, ରୋଗ ଓ ପୁଷ୍ଟିହୀନତା ଯୋଗୁଁ ଅନେକ ଶିଶୁ ମାତୃଗର୍ଭରେ ଥାଇ, କିଏ ବା ଜନ୍ମ ହେଉହେଉ, ଅଳ୍ପ ଦିନ ପରେ ସେ ପୁରକୁ ଚାଲିଯାଉଥିଲେ । ସାଧାରଣ ଲୋକଙ୍କ ଦୃଷ୍ଟିରେ ତାହା ଏକ ଅନ୍ଧ ବିଶ୍ୱାସର ରୂପ ନେଉଥିଲା । ଲୋକମାନେ ଭାବୁଥିଲେ ଯମଦେବତା କୋପରୁ ଛୁଆମାନେ ବାହୁଡ଼ି ଯାଆନ୍ତି । ଯମ ଦେବତା ସବୁ ଭଲ ଜିନିଷଯାକ ନିଏ । ଗୋଲଗାଲ ଚେହେରା ଥିବା ପିଲାଟିଏ ବାହୁଡ଼ି ଗଲେ, ଲୋକେ କହନ୍ତି ଆହା 'ମଲାପୁଅ ମଧୁସୂଦନ' । ସେଇଠୁ ମା' ବୁଢ଼ୀମାନେ ଝିଅଟିଏ ଜନ୍ମ ହେଲେ ନାଆଁ ଦିଅନ୍ତି ନିମ, ପିତେଇ, ପିତା ଲାଗିଲେ ଯମ ନ ନେଇ ଛାଡ଼ିଦେବ । ଆଉ କେତେକ ବାପ ମାଆମାନେ ପିଲାକୁ ବିକି ଦିଅନ୍ତି, ଛ'କଡ଼ା, ସାତ କଡ଼ା କି ନ'କଡ଼ା କଉଡ଼ିରେ ପିଲାକୁ ପୁଣି କିଣି ଆଣନ୍ତି । ପିଲାର ନାଆଁ ରହିଯାଏ ଛକଡ଼ି, ସାତକଡ଼ି, ନକଡ଼ି ଇତ୍ୟାଦି ଇତ୍ୟାଦି । ସେତେବେଳର ସମାଜ ବ୍ୟବସ୍ଥା ଭଳି ଯମ ବି ଅଛୁଆଁ ଲୋକଙ୍କର ପାଖ ମାଡୁନଥିଲା । ପିଲାକୁ ବଞ୍ଚାଇବାକୁ ହେଲେ ବାଉରୀ ବୁଢ଼ୀ, କଣ୍ଡରୁଣୀ ବୁଢ଼ୀ, ପାଲୁଣୀ ବୁଢ଼ୀ, ଧୋବଣୀ ବୁଢ଼ୀକୁ ଟେକି ଦିଅନ୍ତି । ନାଆଁକୁ ମାତ୍ର ଟେକିଦେଇ ନିଜ ପିଲାକୁ ନିଜ ଘରେ ରଖନ୍ତି । ଆଉ ସେ ସବୁ ଲୋକଙ୍କ ଛୁଆଁ ହୋଇଥିବାରୁ ଯମ ବାପୁଡ଼ା ପିଲାକୁ ଛୁଇଁବାକୁ ସାହସ କରେନା । ବାସ୍ ପିଲାମାନେ ବଞ୍ଚି ଯାଆନ୍ତି । ଆଉ ପିଲାର ନାଆଁ ରହିଯାଏ, ପାଲୁଣି, ଧୋବଣୀ, କଣ୍ଡରୁଣୀ ବା କଣ୍ଡରା, ହାଡ଼ିଆ, ଡମା ଇତ୍ୟାଦି ।

ହୁରାସାହିର ସାଧୁଚରଣ ମହାନ୍ତିଙ୍କର ସ୍ତ୍ରୀ ପିତେଇ ଦେଇଙ୍କର ନାଆଁ ବୋଧହୁଏ ସେମିତି ଯମକୁ ଠକିବା ପାଇଁ ରଖାଯାଇଥିଲା । ଯମ ବାପୁଡ଼ା ପିତେଇ ନାଆଁ ଦେଖି ସିନା ତାକୁ ନେଲେନି ମାତ୍ର ସାଧୁଚରଣ ଓ ପିତେଇ ଦେଇଙ୍କର ପିଲାମାନଙ୍କ ଉପରେ ଆଖି ପକାଇଲେ । ସେଥିରୁ ଗୋଟିଗୋଟି ବାହୁଡ଼ିଲେ ।

ଦୁଇଟି ପୁତ୍ର ଜନ୍ମହୋଇ ଶୈଶବ ଅବସ୍ଥାରେ ପରଲୋକ ପ୍ରାପ୍ତ ହେବାରୁ ପତିପତ୍ନୀ ଅତ୍ୟନ୍ତ ଅଧୀର ହୋଇ ପଡ଼ିଥିଲେ । ସେମାନଙ୍କର ଏକମାତ୍ର କନ୍ୟା ଜୀବିତ ଥିଲେ ବି ପୁରୁଣା ଓଡ଼ିଆ ପରିବାରରେ ପିଣ୍ଡପାଣି ପାଇଁ ପୁଅଟି ଲାଗି ଆଶା । ସେଇ କାରଣରୁ ସାଧୁଚରଣ ବଡ଼ଭାଇଙ୍କର ଗୋଟିଏ ପୁଅକୁ ନିଜର କରାଇ ପିତେଇ ଦେଈଙ୍କ କୋଳକୁ ଟେକି ଦେଇଥିଲେ । ତଥାପି ଏଥିରେ ପତ୍ନୀଙ୍କ ମନ ମାନିଲା ନାହିଁ । ସାଧୁଚରଣ ଓ ପିତେଇ ଦେଈ ପୁତ୍ର ପ୍ରାପ୍ତି ଆଶାରେ ନାନା ବ୍ରତ କରୁଥିଲେ । ଥରେ ଗୋଟିଏ କଠିନ ବ୍ରତ କରି ତାହାର ଉଦ୍‌ଯାପନ ରାତିରେ ପିତେଇ ଦେଈ ସ୍ୱପ୍ନ ଦେଖିଲେ ଯେ ତାଙ୍କର ପୁତ୍ର ଲାଭ ହେବ ।

ଭିକାରୀଙ୍କ ଜନ୍ମ ଆଗରୁ ତାଙ୍କ ମାଆଙ୍କର ବିଶ୍ୱାସ ଥିଲା ଯେ, 'ମାଆଙ୍କ ପାପ ଦୃଷ୍ଟିହେତୁ ପିଲାମାନେ ଜୀବିତ ରହୁନାହାନ୍ତି । ତାଙ୍କ ପିଲାକୁ କେହି ନିଜର ବୋଲି ଆଦରି ନେଉ । ସନ୍ତାନ ଜନ୍ମ ପରେ ଭିକାରୀ ଚରଣଙ୍କ ମାଆ ପିତେଇ ଦେଈ ସେମିତି ଆଖି ବୁଜି ରହିଲେ । ସନ୍ତାନ ଜନ୍ମରେ ସାହାଯ୍ୟ କରୁଥିବା ଅଛବ ଧାଇ ବୁଢ଼ୀଟି ତାକୁ ନିଜର ପୁଅ ବୋଲି କହି ଟେକିନେଲା । ଏଥର ମାଆ ଆଖି ଫିଟାଇଲେ । ପାଣଘର ବୁଢ଼ୀଠାରୁ ପୁଅକୁ ଆଉ କଉଡ଼ି ଦେଇ କିଣିବାକୁ ସାହସ ହେଲାନି । ଭିକ ମାଗିଲା ପରି ପିଲାଟିକୁ ମାଗିନେଲେ । ଅଛବ ବୁଢ଼ୀ ପାଖରୁ ମାଗିଆଣିଥିବା ଭିକମଗା ପିଲାଟିକୁ ଆଉ ମାଆର ପାପଦୃଷ୍ଟି କିମ୍ବା ଯମର ନଜର ପଡ଼ିବନି । ପିଲାଟିକୁ ଲୋକେ ଡାକିଲେ ପାଣୁଆ । କିନ୍ତୁ ପିଲାଟିର ନାଆଁ ରହିଗଲା 'ଭିକାରୀ', ସାଧୁଚରଣ ମହାନ୍ତିଙ୍କ ପୁଅ ଭିକାରୀ ଚରଣ ମହାନ୍ତି । ତା ପରେ ପରେ ଦୁଇଟି ପୁଅକୁ ବି ପିତେଇ ଦେଈ ହାଡ଼ି ହାତକୁ ବାଉରୀ ହାତକୁ ସମର୍ପି ଦେଇ ପୁଣି ନେଇଆସି ନାଆଁ ରଖିଲେ 'ହାଡ଼ିବନ୍ଧୁ' ଓ 'ବାଉରୀବନ୍ଧୁ' । ଏଥର ସେମାନେ କେବଳ ବଂଚି ରହିଲେନି, ପୁରୁଷ ପୁରୁଷ ଧରି ସେମାନେ ବଂଶକୁ ଆଗେଇ ନେଇଗଲେ ।

ଭିକାରୀ ଚରଣଙ୍କୁ ଭିକଭାବରେ ମାଗିଆଣି ବି ପିତେଇ ଦେଈଙ୍କର ମନରେ ପତିଆରା ଆସୁନଥାଏ, 'ସତେ ମୋ ପାଣୁଆ ମଣିଷ ହେବ ।' ବରଷଯାକର ଓଷାବ୍ରତ । ଷଠିଦୁଛି ପାଖରେ କେତେ ନେହୁରା । ସେତେବେଳେ ହୁରାସାହି ଥାଏ ନିପଟ ଧୋଇଆ ଅଞ୍ଚଳ । ବରଷେ ଧୋଇହେଲେ ଆଉ ବରଷକୁ ମରୁଡି । ଓଡ଼ିଆର ଗୋଟିଏ କଥାଅଛି 'ଅତରୁ ରୋଗ, ଆକାଶରୁ ମହର୍ଗ' । ଲୁଣା ନଦୀ, କରାଣ୍ଡିଆରେ ପାଣି ପଡ଼ିଲେ ହୁରାସାହିର ଆଖପାଖ ଅଞ୍ଚଳ ଚାଷଜମି ସବୁ ବୁଡ଼ିଯାଏ । ବଢ଼ିପାଣି

ସଙ୍ଗେ ଲଢ଼ିବା ପାଇଁ ଗହୀର ବିଲରେ ବଡ଼ବଡ଼ ସିଙ୍ଗ ଥିବା ଧଳାଧଳା କନିଆରୀ ପଟିଆ ଧାନ । ପାଣି ଯେତେ ବଢୁଥିବ ଧାନଗଛ ସେତେ ଲମ୍ବି ଲମ୍ବି ଯାଉଥିବ । ଠେଙ୍ଗ ଜମିମାନଙ୍କରେ ବୁଣାଯାଏ ସିଙ୍ଗ ଥିବା କଳାକଳା କୁସୁମା ଧାନ । ମରୁଡ଼ିକୁ ଖାତର ନାହିଁ । ଚାଷ ଜମି ସବୁ ଖାଲରେ ହେଲେ ବି ଧୋଇଆ ପାରିର ଗାଁ ଗୁଡ଼ାକ ଖୁବ୍ ଉଚାଉଚା ଜାଗା । ବଢ଼ିପାଣି କିଛି କରିପାରେନା । ସେକାଳର ଧୋଇଆ ଲୋକଙ୍କର ବଢ଼ିପାଣିକି ଖାତର ନାହିଁ । ବଢ଼ିପାଣି ବେଶିଦିନ ରହିଲେ ଦଳଦଳ ହୋଇ ଚାନ୍ଦିନୀ ରଜନୀରେ ନୌକାବିହାର କରନ୍ତି ।

ଭିକାରୀ ଚରଣଙ୍କ ମାମୁଘର ନଈ ଆରପାରି 'ଦକ୍ଷ ବ୍ରହ୍ମପୁର' । ଲୁଣାନଦୀ ଆରପାରି । ଅଳ୍ପଦିନ ଆଗରୁ କେନ୍ଦ୍ରାପଡ଼ା କେନାଲ ଖୋଳାଯାଇଥାଏ । ସେତେବେଳେ ଲୋକମାନେ କେନାଲ ନକହି କହୁଥିଲେ 'ନୂଆନଈ' । ଏବେ ବି ଅନେକ ଲୋକ ସେହିପରି କହନ୍ତି 'ନୂଆନଈ' ।

ଭିକାରୀ ଚରଣଙ୍କ ମାମୁ ଜଗନ୍ନାଥ ପଟ୍ଟନାୟକଙ୍କର ତିନି ଝିଅରେ ଗୋଟିଏ ପୁଅ ହୋଇଥାଏ । ଦୁର୍ଯୋଗକୁ ସେ ପୁଅ ବି କିଛିଦିନ ପରେ ବାହୁଡ଼ି ଗଲା । ଦୁଃଖପ୍ରାଣୀ ମନସ୍ତାପରେ କାଳ କାଟୁଥାଆନ୍ତି । ସେତେବେଳକୁ ଭିକାରୀ ଚରଣଙ୍କର ହାଡ଼ିବନ୍ଧୁ, ବାଉରୀବନ୍ଧୁ ନାମରେ ଆଉ ଦୁଇଟି ଭାଇ ଆସିସାରିଥାନ୍ତି ।

ଜଗନ୍ନାଥ ପଟ୍ଟନାୟକ ସ୍ତ୍ରୀଙ୍କ ଅନୁରୋଧରେ ବଡ଼ ଭଉଣୀ ପିତେଇ ଅପାପାଖକୁ ଯାଇ ଭିକାରୀକୁ ପୁଅକରି ଆଣିବାକୁ ଅଳିକଲେ । ସାଙ୍ଗରେ ବି ଭିକାରୀଙ୍କର ମାଈଁ ତୁଳସୀ ଦେଇ ଯାଇଥାନ୍ତି । ସେ କହିଲେ, "ଅପା, ଭିକାରୀକୁ ତ ତୁମେ ପାଲୁଣି ବୁଢ଼ୀକୁ ଟେକି ଦେଇଥିଲ, ଏବେ ମୋ କୋଳକୁ ଟେକି ଦିଅ । ଭିକାରୀ ଆଉ ପାଣୁଆ ନୁହେଁ, ତମ ପାଣୁଆ ହିଁ ମୋ ଭିକାରୀ । ମୁଁ ଭିକାରୀକୁ ନେଇଯିବାକୁ ଆସିଛି ।"

ସେତେବେଳକୁ ଭିକାରୀଙ୍କୁ ଛଅବର୍ଷ । ସେ ଆଗରୁ ଅନେକ ଥର ମାମୁ ଘରକୁ ଯାଇଛନ୍ତି । ସ୍ନେହମୟୀ ମାଈଁଙ୍କର ଆଦର ଯତ୍ନ ପାଇ ସେ ନଈ ଆରପାରିରେ ଥିବା ମାମୁ ଘରେ ଅନେକ ସମୟ କଟାଇଥିଲେ । ଏଥର ମାମୁ ମାଈଁଙ୍କ କଥାର ଅର୍ଥ ସେ ବୁଝିପାରିଲେନି, ମାତ୍ର ଏତିକି ବୁଝିଲେ ସେ ତ ମାମୁ ଘରକୁ ଯାଉଛନ୍ତି, ଏତେ ହା ହାଲ୍ଲୋଳ କାହିଁକି ?

ପିତା ସାଧୁଚରଣ ନିରବ ରହିଲେ ବି, ପିତେଇ ଦେଇ ଭାଇ ଭାଉଜଙ୍କ ଅଳି ତୁଟାଇ ନ ପାରି କହିଲେ, "ପାଣୁଆଟା ମୋର କିଏ କି, ସେତ ପାଲୁଣିବୁଢ଼ୀର ।

ମୁଁ ତ ଭିକମାଗି ଆଣି ପାଖରେ ରଖିଛି । ଜଗା ଯଦି ନବ ନଉ ।'' ତୁଳସୀ ଦେଈଙ୍କର ମଳିନ ମୁହଁ ଉଜଳି ଉଠିଲା । ପିଲାବେଳୁ ସେ ଭିକାରୀକୁ ପାଳି ଆସିଥିଲେ । ଏବେ ଛଅ ବରଷର ଭିକାରୀ ପୁଣି ନିଜପାଖକୁ ଫେରିଆସିଲା । ନଣନ୍ଦ ଭାଉଜ ଧରାଧରିହୋଇ ବହେ କାନ୍ଦି ପକାଇଲେ । ସାଧୁଚରଣ ଜଗନ୍ନାଥ ଆଖିରୁ ଲୁହ ଗଡ଼ାଇ ପକାଇ କରାଣିଆ ନଈ କୂଳେ କୂଳେ ବାଟେଇ ଦବାକୁ ଆସିଲେ ।

ସେଇଠୁ ସାଧୁଚରଣ ମହାନ୍ତିଙ୍କ ପୁଅ ପ୍ରାଣବନ୍ଧୁ ମହାନ୍ତି ପାଇଟିଗଲେ ଜଗନ୍ନାଥ ପଟ୍ଟନାୟକଙ୍କ ପୁଅ ଭିକାରୀଚରଣ ପଟ୍ଟନାୟକ । ସମୟ ତା ବାଟରେ ଆଗେଇ ଚାଲିଲା ।

ସେତେବେଳେ କଟକ ଜିଲ୍ଲାର କେନ୍ଦ୍ରାପଡ଼ା ଅନ୍ତର୍ଗତ ଦକ୍ଷବ୍ରହ୍ମପୁର କଟକକୁ ଗମନାଗମନର ମୁଖ୍ୟପଥରେ ଥାଏ । କଟକରୁ କେନ୍ଦ୍ରାପଡ଼ାକୁ ସଡ଼କ ପଥ ତିଆରି ହୋଇନଥାଏ । ନଅଙ୍କ ସ୍ମାରକୀ ସ୍ୱରୂପ ଖୋଳାଯାଇଥାଏ କେନ୍ଦ୍ରାପଡ଼ା କେନାଲ । ନୂଆନଈ । ସାଧାରଣ ଲୋକମାନଙ୍କର ଗମନାଗମନର ସର୍ବୋତ୍କୃଷ୍ଟ ଯାନ ଥାଏ ବଳଦଗାଡ଼ି ଶଗଡ଼ । ଆଉ କେତେକ ନୌକାରେ ବସି ଯାଉଥିଲେ । ବେଶି ଲୋକ ଯାଆନ୍ତି ଚାଲିଚାଲି ।

ସେ ସମୟରେ ଓଡ଼ିଶାର ଗ୍ରାମାଞ୍ଚଳରେ ସରକାରୀ ସ୍କୁଲ ସବୁ ବସିନଥାଏ । କିନ୍ତୁ ପ୍ରାଥମିକ ଶିକ୍ଷାପାଇଁ ଲୋକମାନଙ୍କର ଆଦର କୌଣସି ମାତ୍ରାରେ କମ୍ ନଥାଏ । ଘରୋଇ ଚାଟଶାଳୀମାନ ବସାଇ ପିଲାମାନଙ୍କୁ ଶିକ୍ଷା ଦିଆଯାଉଥାଏ । ପ୍ରାଚୀନ ସାହିତ୍ୟ-କୋଇଲି, ଚଉତିଶା, ଛାନ୍ଦ, ଚଉପଦୀ, ଭାଗବତ ପୁରାଣ ପଢ଼ିପାରିଲେ ପାଠ ଶେଷ । ଅଭିଧାନ ମଧ୍ୟରେ ଅମରସିଂହଙ୍କ ଅମରକୋଷ ପ୍ରଧାନ ଥିଲା । ଲୋକେ କହନ୍ତି 'ଯେବେ ପଢ଼ିଥିବୁ ଅମର କୋଷ, ଆଉସବୁ ପାଠ ଗାଳରେ ଖୋଷ ।' ପୁଣି କହନ୍ତି, ''ହର, ଗୁଣ, ଫେଡ଼, ମିଶା, ଆଉ ସବୁ ପାଠ ଫସର ଫସା ।' ତେବେ ପ୍ରାଚୀନ ପଦ୍ଧତିରେ ଗଣିତର ଚାହିଦା ବେଶ୍ ଥିଲା । ଅଧିକାଂଶଙ୍କର ମୂଳ ଲକ୍ଷ୍ୟ ଥିଲା ପାଠ ପଢ଼ି ମୂର୍ଖଦୋଷ କଟାଇବା । ବୁଢ଼ାବାପ, ବୁଢ଼ୀମାଆ, ଆଈ ଅଜାଙ୍କୁ ଶେଷବେଳକୁ ଭାଗବତ ଅଧ୍ୟାୟେ ଶୁଣାଇ ପାରିବା । ଏଇତ ମୂଳକଥା । ଏ ବାଟରେ ବି ଯମକୁ ଠକିଦେବା ପାଇଁ ଷଡ଼ଯନ୍ତ୍ର । ଭାଗବତ ଶୁଣିବା ଲୋକକୁ ଯମ ଆଉ ନବନି । ବୈକୁଣ୍ଠପୁରର ଦ୍ୱାର ତାଙ୍କ ପାଇଁ ଖୋଲା । ଏଇ ବିଶ୍ୱାସ ହିଁ ଅଧା ଲଙ୍ଗଳା ଅଧା ପେଟପୂରା ବା ଉପାସିଆ ଓଡ଼ିଆ ପିଲାଙ୍କୁ ପାଠ ପଢ଼ାଇବାକୁ ଉତ୍ସାହ ଦେଇଥିଲା । ଊନବିଂଶ ଶତକରେ ଓଡ଼ିଶାର ଲୋକମାନେ ଅଧିକ ସଂଖ୍ୟାରେ ଉଚ୍ଚ ଶିକ୍ଷିତ ହୋଇ ନପାରିଲେ ବି ଆନୁପାତିକ ହାରରେ ଅନ୍ୟ ରାଜ୍ୟ ଅପେକ୍ଷା ସାକ୍ଷର ହାରରେ ଅଧିକ ଥିଲେ ।

ସେ କାଳର ଚାଟଶାଳୀ ପାଠ ବି ବ୍ୟୟ ବହୁଳ ଥିଲା । ଗାଁର ସବୁଲୋକ ପଇସା ଦେଇ ପାଠ ପଢ଼ାଇବା ପାଇଁ ସମର୍ଥ ନଥିଲେ । ସେତେବେଳେ ଚାଟଶାଳୀ ଅବଧାନଙ୍କର ମାସକୁ ଦରମା ବାରଅଣା, ଗୋଟିଏ ଟଙ୍କାର ଚାରିଭାଗରୁ ତିନିଭାଗ । ଖାଇବା ପିଇବା ଭାର ପିଲାମାନଙ୍କ ଘରୁ । ନଅଙ୍କ ଦୁର୍ଭିକ୍ଷ ପରେପରେ ଚାଉଳ ଦର ବଢ଼ିଯାଇଥିଲା । ଟଙ୍କାରେ ଚାଉଳ ଅଣି କି.ଗ୍ରା. (ସେତେବେଳେ ସେର ବା ଗୌଣୀର ମାପ ଥିଲା ।) ନଅଙ୍କ ଆଗରୁ ଟଙ୍କାରେ ଚାଉଳ ଥିଲା ଏକ କ୍ୱିଣ୍ଟାଲ କୋଡ଼ିଏ କି.ଗ୍ରା. ; ମାତ୍ର ସେତେବେଳେ ଲୋକଙ୍କ ପାଖରେ ଟଙ୍କା ପଇସାର ଘୋର ଅଭାବ । ଚାଟଶାଳୀରେ ଭିକାରୀ ଚରଣଙ୍କ ପାଠପଢ଼ା ଆରମ୍ଭ ହେଲା ।

## ପାଠପଢ଼ା ବଡ଼ ଦୁଃଖ, ପଛରେ ମିଳଇ ସୁଖ

ଆଜିକାଲି ଭଳି ସେତେବେଳେ ଏତେ ସ୍କୁଲ କଲେଜ ନଥାଏ । ଗାଁର ପାଠପଢ଼ା ଚାଟଶାଳୀରୁ ଆରମ୍ଭ ହୁଏ । ବର୍ତ୍ତମାନ ପାଠପଢ଼ା ନାଆଁରେ ଯେପରି ତିନି ବର୍ଷର ପିଲା ଉପରେ ବହିବସ୍ତାନୀର ବୋଝ ନଦିଦେଇ ବାପ ମା' ଚାକିରୀକୁ ବାହାରି ଯାଉଛନ୍ତି କିଂବା ଅନ୍ୟାନ୍ୟ ଘର କାମରେ ବ୍ୟସ୍ତ ରହୁଛନ୍ତି, ସେ ସମୟରେ ସେପରି ନଥିଲା । ଯୌଥ ପରିବାରରେ ହେଉ ବା ଗ୍ରାମର ପଡ଼ିଶାମାନଙ୍କ ମେଳରେ ହେଉ ହସ ଖେଳରେ ପିଲାମାନଙ୍କର ବାଲ୍ୟକାଳ ସହଜରେ କଟିଯାଉଥିଲା । ଗାଁ ଦାଣ୍ଡରେ ଧୂଳିଘର କରି ଖେଳିବା, ନଇ ବାଲିରେ ମନ୍ଦିର ତିଆରି କରି ସଜାଇବା, ଘର ତିଆରି କରି ମିଛି ମିଛିକିଆ ରୋଷେଇ କରି ଭାତ, ଡାଲି, ତରକାରି କରି ଖେଳ ଖେଳିବାରେ ପିଲାଦିନ କେତେ ମଉଜରେ କଟିଯାଉଥିଲା । ଆମ୍ବ ତୋଟା ବାଡ଼ି ବଗିଚାରେ ଅସୁମାରୀ ଫଳ । ଗାଁ ମାନଙ୍କରେ ସେମିତି ବିଶେଷ କିଛି କଟକଣା ନଥାଏ । ଗାଁ ଦଣ୍ଡା ବୁଦିବୁଦିକିଆ ଜଙ୍ଗଲରେ କେତେ ଜାତିର କୋଳି । ପିଲାମାନେ ବରଷସାରା ବୁଲି ବୁଲି ନାନା ଋତୁରେ ଜାମୁକୋଳି, ବେଚକୋଳି, ଭଇଁଚକୋଳି, ଖିରିକୋଳି, କଣ୍ଟେଇକୋଳି, ନରକୋଳି, ଆମ୍ବ ପିଜୁଳି କେତେକେତେ ଜିନିଷ ଖାଆନ୍ତି । ସେତେବେଳେ ଲୋକସଂଖ୍ୟା ଏତେ ନଥିଲା କି ପିଲାମାନଙ୍କ ପାଇଁ ସେପରି କଟକଣା ବି ନଥିଲା । ଏଇ କୋଳିଖିଆ ବୁଲାବୁଲିର ପ୍ରଭାବ ପରବର୍ତ୍ତୀ ସମୟରେ ଭିକାରୀ ଚରଣଙ୍କ ଜୀବନରେ ବିଶେଷ ପ୍ରଭାବ ପକାଇଥିଲା । ଭିକାରୀ ଚରଣ ହୁରାସାହିର ଗୋଟିଏ ଚାଟଶାଳୀକୁ କେବଳ ଯାଉଥାନ୍ତି । କିଛି ପାଠ ଆରମ୍ଭ ହୋଇନଥାଏ । ତା'ପରେ ଚାଲିଆସିଲେ ଦକ୍ଷବ୍ରହ୍ମପୁର, ମାମୁ ଘରକୁ ।

ମାମୁ ଘରକୁ ସିନା ଆସିଲେ ପାଠପଢ଼ିବା ନାଆଁ ଶୁଣିଲେ, ଚାଟଶାଳୀ ନାଆଁ ଶୁଣିଲେ ଭିକାରୀଙ୍କର ମୁହଁଟି ଯେପରି ଶୁଖିଯାଉଥିଲା । ପିଣ୍ଡରୁ ପ୍ରାଣ ବାହାରିଗଲା ପରି ହେଉଥିଲା । ମାଇଁ, ଆଈମା ବୁଝାବୁଝି କରିବାରୁ ଭିକାରୀ ଅବଧାନଙ୍କ ବେତ କଥା କହିଲେ । ଆଈ ମା ଭିକାରୀକୁ କୋଳରେ ବସାଇ କହିଲେ, "ବାବୁରେ ! ପାଠପଢ଼ା ବଡ଼ ଦୁଃଖ, ପଛରେ ମିଳଇ ସୁଖ ।" ଭିକାରୀର ପାଠପଢ଼ା ପାଇଁ ମାମୁ ଜଗନ୍ନାଥ ପଟ୍ଟନାୟକ ନିଜ ଘରେ ଜଣେ ଯୁବକ ଅବଧାନଙ୍କୁ ନିଯୁକ୍ତ କଲେ । ସେ ଘରେ ରହି ପାଠ ପଢ଼ାଇଲେ । ମାସକୁ ବେତନ ବାରଅଣା(ପଚସ୍ତରୀ ପଇସା) । ଅବଧାନେ ଖାଇପିଇ ଘରେ ରହିଲେ । ଖଞ୍ଜା ବାହାରେ ମେଲା ଘରଟିରେ ଚାଟଶାଳୀ । ଘର ଦୁଆର ମୁହଁରେ ଆଈମା ପାନକୁଟାରେ ପାନ ପୂରାଇ ଠୁକୁଠୁକୁ କରୁଥାନ୍ତି । ଭିକାରୀଙ୍କର ପାଠପଢ଼ା ଚାଲିଥାଏ । ପରେ ସେ ଗ୍ରାମର ଅନ୍ୟକେତେଜଣ ବାଳକ ପାଠ ପଢ଼ିବା ପାଇଁ ଆଗ୍ରହ ଦେଖାଇବାରୁ ଜଗନ୍ନାଥ ପଟ୍ଟନାୟକ ସେ ମେଲାଘରଟିକୁ ଚାହାଳୀ କରାଇ ଦେଲେ । ଯେଉଁ ପିଲାମାନେ ପଢ଼ନ୍ତି ସେମାନେ ମାସକୁ ଦୁଇଅଣା (ବାରପଇସା) ଦିଅନ୍ତି । ପଢ଼ା ମଧ୍ୟରେ ଜଣେ ମାତ୍ର ଅବଧାନ ଥିଲେ । ଶିକ୍ଷକ ଭାବରେ ତାଙ୍କର ଯଥେଷ୍ଟ ସମ୍ମାନ ଥିଲା । ବିଦେଶରେ ରହୁଥିବା ଗ୍ରାମବାସୀଙ୍କର ଚିଠିପତ୍ର ଆସିଲେ ପଢ଼ିବା ଓ ସେଗୁଡ଼ିକର ଉତ୍ତର ଲେଖିବା ସେତେବେଳେ ଅବଧାନଙ୍କର ଦାୟିତ୍ୱ ଥିଲା । ଏହି ସୂତ୍ରରେ ଗ୍ରାମର ଅଧିକାଂଶ ଘରର ଟିକିନିକି ଖବର ସେ ରଖି ପାରୁଥିଲେ । ପୂନିଅଁ ପର୍ବ ଭଲମନ୍ଦ ସବୁଥିରେ ଅବଧାନଙ୍କୁ ଡକରା । ରୋଗବୈରାଗ୍ୟ, ନ୍ୟାୟ ନିଶାପ ସବୁଥିରେ ଅବଧାନଙ୍କ ଉପସ୍ଥିତି । ସେତେବେଳେ ଗ୍ରାମମାନଙ୍କରେ ଏଇ ଅବଧାନମାନଙ୍କର ସ୍ୱତନ୍ତ୍ର ସମ୍ମାନ ଥିଲା । ତୃତୀୟ ପକ୍ଷ ଭାବରେ ନାନା କଳହ ଦ୍ୱନ୍ଦର ସେ ସମାଧାନ କରୁଥିଲେ । ଅନ୍ୟପକ୍ଷରେ ଚାଟମାନଙ୍କ ପ୍ରତି ଅବଧାନଙ୍କର ଶାସନ ନୀତି ଖୁବ୍ କଠିନ ଥିଲା । ଦଣ୍ଡବିଧାନ ସେତେବେଳେ ବଡ଼ ଭୟଙ୍କର ଥିଲା । ଭିକାରୀ ଚରଣଙ୍କୁ ପାଠପଢ଼ାଉଥିବା ଅବଧାନ ଏଥିରେ ଅନେକ କୋହଳ କରୁଥିଲେ । ଗୋଟିଏବର୍ଷ ଚାଟଶାଳୀରେ ପଢ଼ିଲା ପରେ ଗ୍ରାମରେ ନିମ୍ନ ପ୍ରାଇମେରୀ ସ୍କୁଲଟିଏ ଖୋଲିଲା । ଭିକାରୀ ଚରଣ ସେହି ସ୍କୁଲକୁ ପଢ଼ିବାକୁ ଗଲେ । ଗାଆଁର ଚାଟଶାଳୀଟି ଭାଙ୍ଗିଗଲା ।

ସ୍କୁଲରେ ଜଣେ ବୟସ୍କ ଶିକ୍ଷକ ରହୁଥିଲେ । ତାଙ୍କୁ ଅବଧାନ ନ କହି ସମସ୍ତେ 'ଆପଣ' ବୋଲି ସମ୍ବୋଧନ କରୁଥିଲେ । ଆପଣଙ୍କର ସ୍ୱଭାବ ସ୍ନେହପୂର୍ଣ୍ଣ ଥିଲେ ହେଁ ଶାସନ ବି କଠିନ ଥିଲା । ଭିକାରୀଚରଣଙ୍କର ଆଈ ମା' ପ୍ରତିଦିନ ଭିକାରୀକୁ

ଘୁଷୁକୁ ଧରାଧରିବାବେଳେ କହନ୍ତି, ''ପାଠପଢ଼ା ବଡ଼ ଦୁଃଖ, ପଛରେ ମିଳଇ ସୁଖ।'' ପଛରେ କି ସୁଖ ମିଳିବ ସେହି ଆଶା ଭିକାରୀ ଚରଣଙ୍କୁ ଆଗେଇ ନେଇନେଇ ଚାଲିଲା। ଆଈମାଙ୍କ କାହାଣୀ ଆଉ ଶିକ୍ଷକଙ୍କ ସ୍ନେହପ୍ରବଣ ଭାବ ଭିକାରୀଙ୍କ ଆଗ୍ରହ ବଢ଼ାଇ ଚାଲିଲା। ସେତେବେଳେ ଚାଟଶାଳୀ ପରି ସ୍କୁଲରେ ବି 'ଶୂନ୍' ପ୍ରଥା ଥିଲା। ପ୍ରଥମେ ଯେଉଁ ଛାତ୍ର ପହଞ୍ଚିଥିବ ଶିକ୍ଷକ ବେତକୁ ମୁଣ୍ଡରେ ଲଗାଇ ଆସ୍ତେ ହାତରେ ଛୁଇଁ ଦେବେ। ଦ୍ୱିତୀୟ ଛାତ୍ର ଆସ୍ତେଆସ୍ତେ ଦୁଇଟି ବେତ ପାହାର ହାତ ପାପୁଲିରେ ଖାଇବ। ପରବର୍ତ୍ତୀ ପିଲାଙ୍କର ବେତର ପାହାର ସଂଖ୍ୟା ବଢ଼ିବା ସଙ୍ଗେସଙ୍ଗେ ବେତର ଆଘାତ ବି ବଢ଼ିବଢ଼ି ଯିବ। ଆଈମାଙ୍କ କୋଳରେ ଯାକିଯାକି ହୋଇ ଶୋଇପଡୁଥିବା ଭିକାରୀ ପ୍ରତିଦିନ ସ୍କୁଲରେ ପ୍ରଥମେ ପହଞ୍ଚି ଛୋଟ ଶୂନ୍‌ଟିଏ ପାଇ ଶିକ୍ଷକଙ୍କ ଠାରୁ ସାବାସ୍ ପାଉଥିଲେ।

ଚାଟଶାଳୀ ଭଳି ସେତେବେଳେ ସ୍କୁଲ ବି ସକାଳୁ ସକାଳୁ ହେଉଥିଲା। ପିଲାମାନେ ପ୍ରଥମେ ଆସି ସ୍କୁଲ ଘର ସଫା କରନ୍ତି, ପାଠ ଲେଖିବା ସ୍ଥାନ ସଫା କରନ୍ତି । (ସେତେବେଳେ ଦୁଧ ଖଡ଼ିରେ ମାଟି ଚଟାଣ ଉପରେ ପାଠଅଭ୍ୟାସ କରିବାକୁ ପଡୁଥିଲା।) ମଝିରେ ମଝିରେ ଚାଟମାନେ ସ୍କୁଲ ଘର ସଫା କରିବା ସହିତ ସାଧାରଣ ମରାମତି କାମ ବି କରିଦିଅନ୍ତି। ଗ୍ରାମ ଲୋକଙ୍କ ସହଯୋଗରେ ସ୍କୁଲ ଘର ଛପର ହୋଇଯାଏ। ଶ୍ରୀପଞ୍ଚମୀ, ହରିତାଳିକା (ଗଣେଶ ପୂଜା) ଓ ଅନ୍ୟାନ୍ୟ ଉତ୍ସବ ଦିନମାନଙ୍କରେ ମାଟି ଗୋବର ଆଣି ସ୍କୁଲଘର ଲିପାଲିପି କାମ ପିଲାମାନେ କରନ୍ତି। ବାଳକ ଭିକାରୀଚରଣଙ୍କୁ ଏ ସଂଘବଦ୍ଧ କାମ ଖୁବ୍ ଭଲ ଲାଗେ। ପରବର୍ତ୍ତୀ ଜୀବନରେ ସେ ଏ ସବୁକୁ ଖୁବ୍ ମନେପକାନ୍ତି।

ଭିକାରୀଚରଣଙ୍କର ମା(ମାଈଁ) ଜଣେ ସ୍ନେହମୟୀ ମହିଳା ଥିଲେ। ସେତେବେଳେ ରାତିରେ ଗାଁମାନଙ୍କରେ ପୋଲାଙ୍ଗ ତେଲର ଦୀପଟିଏ ଲଗାଇଦେଲେ କାମ ସବୁ ଚଳିଯାଉଥିଲା। ଘର ବାହାରକୁ ଯିବାକୁ ହେଲେ ନିଆଁହୁଳା ଲଗା ବନ୍ଧିଆ ବତୀ ସବୁ ହାତରେ ଧରି ଆର ହାତରେ ଜଡ଼ାତେଲର ଦାନୀ ଧରି ଯିବାକୁ ହେଉଥିଲା। କେବଳ ଜହ୍ନମାମୁ ହିଁ ଗାଁ'ରେ ଖୋଲା ଆଲୁଅ ଦେଉଥିଲେ। ନହେଲେ ଗାଁ'ଟା ସାରା ଅନ୍ଧାର ଗୁଡୁଗୁଡ଼ିର ରାଇଜ। ପ୍ରତିଦିନ ସଞ୍ଜ ହେଲେ ଭଉଣୀମାନଙ୍କ ସହିତ ବସି ଭିକାରୀଚରଣ ଗପ ଶୁଣନ୍ତି। ଭଉଣୀମାନେ ଡାଆଣୀ ଚିରୁଗୁଣୀ, ଭୂତ-ପ୍ରେତ ଗପ କହନ୍ତି, ଆଉ ଅନ୍ଧାର ଗୁଡୁଗୁଡ଼ିକୁ ଭୟକରି ଯାକିଯାକି ହୋଇ ବସନ୍ତି। ମା ସଞ୍ଜବେଳର ରୋଷେଇ ସାରିଦେଇ ଆସି ରାମାୟଣ ମହାଭାରତ ଗପ କହନ୍ତି।

ମା' ତୁଳଷୀ ଦେଇ ଧବୁବେଳେ ଖଡ଼ଖଡ଼ ହୋଇ ପୁଅକୁ ଖିଛି କହୁଥାନ୍ତି । ଭିକାରୀ ଭାରି ଖୁସିରେ ମୁଣ୍ଡକୁ ହଲାଇ ହଁ ମାରନ୍ତି । କୂଅମୂଳେ ପଥରଚଟାଣ ଉପରେ ଗାଧୋଇ ଦେବାବେଳେ ଦିନେ ମା' ଭିକାରୀକୁ କହିଲେ, 'ଏଇ କପା ମଞ୍ଜି ପୋତିଦେଲେ ଗଛ ହେବ ଏଇ ଗଛରୁ ଫୁଲଫୁଟି କପା ହେବ, କପା ତୁଳାରୁ ସୂତାକାଟି ଲୁଗାବୁଣାହୁଏ । ଭିକାରୀଚରଣ ମଞ୍ଜିଟି ପୋତିଦେଇ ତା ପରଦିନକୁ ଅପେକ୍ଷା କଲେ । କପା ନ ଫୁଟିବାରୁ ମାଟିଖୋଳି ଦେଖିଲେ ମଞ୍ଜିଟି ଖାଲି ଫାଟିଯାଇଛି । ମା' ଏକଥା ବୁଝାଇ ଦେଲେ, 'ଦିନକରେ କ'ଣ ଗଛ ବଢ଼ି, କପା ଫୁଟି ଗଛରୁ ଏତେ କଥା ହେବ, ତା'ପାଇଁ ସମୟ ଦରକାର । ଧୈର୍ଯ୍ୟ ଧଇଲେ ଜୀବନରେ ସବୁ ସମ୍ଭବ ହୋଇପାରିବ । ପରିଣତ ବୟସରେ ଭିକାରୀଚରଣ ଏଇସବୁ କଥାକୁ ମନେପକାଇ କହନ୍ତି, 'ମୋର କୁଟୀର ଶିଳ୍ପ ପାଇଁ ପ୍ରେରଣା ମୋ ମା', ମୋ ଗାଁ ମାଟି ।' ବାଡ଼ିରେ ଗଛଟିଏ ଲଗାଇ ପାଣିଦେବା, ଯତ୍ନ କରିବାର ଅଭ୍ୟାସ ଗାଁ ମାଟିରେ ମା'ଙ୍କ ପ୍ରେରଣାରୁ ଆରମ୍ଭ ହୋଇଥିଲା । ଚାଟଶାଳୀରେ ବର୍ଷେ ଗାଁ ସ୍କୁଲରେ ଦୁଇବର୍ଷ ପଢ଼ିଲା ପରେ ଭିକାରୀ ଚରଣ ଗାଁ ମାଟିରୁ ପାଠପଢ଼ା ଛାଡ଼ିଲେ ।

## କେଁ କଟର ଶଗଡ଼ ଗାଡ଼ି, ବଳଦ ବେକରେ ଘଣ୍ଟି ଘାଗୁଡ଼ି

ଭିକାରୀ ଚରଣଙ୍କ ବାପା(ମାମୁ) ଜଗନ୍ନାଥ ପଟ୍ଟନାୟକ ମୟୂରଭଞ୍ଜ ରାଜ୍ୟର ଜଣେ ରାଜକର୍ମଚାରୀ ଥିଲେ । ଗାଁରେ ପାଠପଢ଼ାର ସୁବିଧା ହୋଇ ନ ପାରେ ଭାବିକରି, ସେ ଭିକାରୀଚରଣଙ୍କୁ ବାରିପଦା ନେଇଯିବାକୁ ଆସିଲେ । ସେତେବେଳକୁ ଭିକାରୀଚରଣଙ୍କୁ ମାତ୍ର ନଅ ବର୍ଷ । ଓଡ଼ିଶାରେ ସେତେବେଳେ ଗମନାଗମନର କୌଣସି ସୁବିଧା ନଥାଏ । ମୟୂରଭଞ୍ଜ ଯିବାପାଇଁ ଏକମାତ୍ର ବଳଦଗାଡ଼ି ହିଁ ଭରସା । ସେତେବେଳେ ଅବସ୍ଥାସଂପନ୍ନ ଘରର ଲୋକମାନଙ୍କର ପାଇଁ ହାତୀ, ଘୋଡ଼ାର ବ୍ୟବସ୍ଥା ଥାଏ । ମଧ୍ୟବିତ୍ତ ଲୋକଙ୍କ ପାଇଁ ଗୋରୁଗାଡ଼ି ଛଡ଼ା ଆଉ ଅଧିକ ଆଶା କରାଯାଇ ପାରୁ ନଥିଲା ।

ବାରିପଦା ଯିବାପାଇଁ ଶଗଡ଼ର ବ୍ୟବସ୍ଥା ହେଲା । ବଳଦମାନଙ୍କ ବେକରେ ଘଣ୍ଟି ଘାଗୁଡ଼ି ବନ୍ଧା ହେଲା । ଗାଡ଼ିରେ ତାଟି ଭିଡ଼ା ହେଲା । ଛଣ ବିଡ଼ା ପରାହୋଇ ତା ଉପରେ ଗଦି ପଡ଼ିଲା । ବାଟପାଇଁ ନାନା ଜିନିଷ ସଜିଲ ହୋଇ ବନ୍ଧାହେଲା । ବଳଦ ବେକରେ ଘଣ୍ଟି ଘାଗୁଡ଼ି ବଜାଇ କେନାଲ ବନ୍ଧର ଉଠାପକା ରାସ୍ତାରେ କେଁ କଟର କରି ଶଗଡ଼ଗାଡ଼ି ଗଡ଼ିଗଡ଼ି ଚାଲିଲା । ଚଉଦ୍ୱାର ଉତ୍ତରରେ ବିରୂପା ନଈ ପାରହୋଇ ଶଗଡ଼ ଜଗନ୍ନାଥ ଶଡ଼କରେ ଚାଲିଲା । ଶଗଡ଼ ସାଙ୍ଗରେ ଦୁଇଜଣ

ସାହାଯ୍ୟକାରୀ । ରାସ୍ତା କଡ଼ରେ ଚଟିଘର ଦେଖି ଶଗଡ଼ ରହେ, ବଳଦମାନେ କୁଣ୍ଡା ପାଣି ପିଅନ୍ତି । ରୋଷେଇବାସ ହୋଇ ଖିଆପିଆ ହେଲାପରେ ପୁଣି ବାହାରି ପଡ଼ନ୍ତି, ରାତି ହେବା ଆଗରୁ କେଉଁ ଚଟିଘରେ ରହିବାର ବ୍ୟବସ୍ଥା ହୁଏ । ଖରାଦିନିଆ ନଦୀମାନଙ୍କରେ ଶଗଡ଼ ସବୁ ପଶିଯାଉଥାଏ । ବାରିପଦାରେ ପହଞ୍ଚିବାକୁ ନଅ ଦିନ ସମୟ ଲାଗିଲା । ବର୍ଷକ ପରେ ଅବଶ୍ୟ ଅବସ୍ଥା ବଦଳିଗଲା । ବାଲେଶ୍ୱର ପର୍ଯ୍ୟନ୍ତ ଷ୍ଟିମାର ଯିବା ଆସିବାର ବ୍ୟବସ୍ଥା ହୋଇଗଲା ।

ବାରିପଦାରେ ସେତେବେଳେ ମାଇନର ସ୍କୁଲକୁ ଲାଗି ଗୋଟିଏ ଅପର ପ୍ରାଇମେରୀ ସ୍କୁଲଥାଏ । ସେଠାରେ ଭିକାରୀ ଚରଣଙ୍କର ନାଆଁ ଲେଖାଇ ଦିଆଗଲା । ପଢ଼ାପଢ଼ିରେ ବିଶେଷ କୌଣସି ଅସୁବିଧା ହେଲାନି । ସେ ମାଇନର ସ୍କୁଲରେ ପଢ଼ିଲାବେଳେ ସ୍କୁଲଟି ଏଣ୍ଟ୍ରାନ୍ସ ସ୍କୁଲରେ ପରିଣତ ହୋଇଗଲା । ଏଣ୍ଟ୍ରାନ୍ସ ପରୀକ୍ଷା କେବଳ କଟକରେ ହେଉଥିଲା । ଭିକାରୀ ଚରଣ ଏଣ୍ଟ୍ରାନ୍ସ ପରୀକ୍ଷା ଦେବାକୁ ଆସି ପ୍ରଥମେ କଟକ ଦେଖିଲେ । ଏଇ କେତେ ବର୍ଷ ମଧ୍ୟରେ ଗମନାଗମନର ଅନେକ ପରିବର୍ତ୍ତନ ହୋଇଯାଇଥାଏ । କଟକ କେନ୍ଦ୍ରାପଡ଼ା ମଧରେ ଷ୍ଟିମାର ଚଳୁଥାଏ । ରେଳଗାଡ଼ି ଚାଲିବା ପାଇଁ କାମ ଆରମ୍ଭ ହୋଇଥାଏ । ପୂରା ଚାଲି ନଥାଏ ।

## ବିଦ୍ୟାରମ୍ଭେ ଗୁରୁଶ୍ରେଷ୍ଠ

ବାରିପଦାର ସ୍କୁଲଜୀବନ ଭିକାରୀ ଚରଣଙ୍କ ଜୀବନର ଗତିପଥକୁ ନିୟନ୍ତ୍ରିତ କରିଥିଲା । ପ୍ରାଇମେରୀ ସ୍କୁଲରେ ଦୁଇ ତିନିବର୍ଷ ପଢ଼ିଲା ପରେ ତାଙ୍କୁ ଜଣେ ଉତ୍ତମ ଗୃହଶିକ୍ଷକ ମିଳିଥିଲେ । କଥାରେ କହନ୍ତି, ''ବିଦ୍ୟାରମ୍ଭେ ଗୁରୁଶ୍ରେଷ୍ଠ'' ଅର୍ଥାତ ଶ୍ରେଷ୍ଠ ଗୁରୁଙ୍କ ଠାରୁ ବିଦ୍ୟାରମ୍ଭ ହୋଇଥିଲେ, ଭବିଷ୍ୟତ ଜୀବନର ପଥ ସୁଷମ ହୋଇଥାଏ । ପାଠପଢ଼ାର ଆରମ୍ଭ ମୂଳଦୁଆ ଯଦି ଠିକ୍ ନ ରହିଲା ତେବେ କଞ୍ଚା ମୂଳଦୁଆକୁ ସଜାଡ଼ିବା ପାଇଁ ଅନେକ ସମୟ ଲାଗେ ।

ଏହିପରି ଜଣେ ଗୁରୁ ଶ୍ରୀ ଶ୍ରୀପତି ରାୟ ଗୃହ ଶିକ୍ଷକ ଭାବରେ ଭିକାରୀ ଚରଣଙ୍କୁ ଶିକ୍ଷାଦାନ କଲେ । ଶ୍ରୀ ରାୟ ଯେପରି ସୁଶୃଙ୍ଖଳ, ନିଷ୍ଠାବାନ ସେହିପରି ସ୍ନେହପ୍ରବଣ ବ୍ୟକ୍ତି । ବେଶପୋଷାକ, ଚାଲିଚଳଣି, ଖାଦ୍ୟପେୟରେ ଜଣେ ସାଧୁପୁରୁଷ ଭାବରେ ସମସ୍ତଙ୍କର ଶ୍ରଦ୍ଧା ଭାଜନ ହୋଇଥାନ୍ତି । ଶ୍ରୀପତି ବାବୁ ଛାମୁକରଣଙ୍କ କୋଠରୀ ଅନ୍ତର୍ଗତ ଗୋଟିଏ କୋଠରୀରେ ରହୁଥିଲେ । ହାତରେ ରୋଷେଇ କରିବା, ପ୍ରଚୁର ବହି ପଢ଼ିବା ଓ କବିତା ଲେଖିବା ଥିଲା ଶ୍ରୀପତି ବାବୁଙ୍କର ନିତ୍ୟନୈମିତ୍ତିକ କାର୍ଯ୍ୟ ।

ବାଳକ ଭିକାରୀ ଚରଣ ଏଭଳି ଜଣେ ସ୍ନେହ ପ୍ରବଣ ଗୁରୁଙ୍କୁ ପାଇ ଖୁସି । ଆଈମା'ଙ୍କୁ ଗାଁରେ ଛାଡ଼ି ଆସିବା ପରଠାରୁ ଆଉ ଗପ ଶୁଣିବାର ସୁଯୋଗ ବେଶି ମିଳୁନଥିଲା । ଆଈମା ଶୁଣାଉଥିଲେ ଭାରତୀୟ ପୁରାଣ କାହାଣୀ । ଶ୍ରୀପତି ବାବୁ ଶୁଣାଇଲେ ଇଂରେଜୀ ପୁସ୍ତକର କାହାଣୀ । ଗ୍ରୀକ୍ ମାଇଥୋଲୋଜିର କାହାଣୀ । ଭଲ ଗରାଖ, ଉତ୍ତମ ଶିଷ୍ୟଟିଏ ପାଇ ଶ୍ରୀପତି ବାବୁ ବି ମହାଖୁସି । ଭିକାରୀ ଚରଣ ପାଠପଢ଼ା, ଲେଖାଲେଖି ସହିତ ଅନ୍ୟାନ୍ୟ ଅନେକ ଭଲ ଅଭ୍ୟାସକୁ ବଢ଼ାଇ ଚାଲିଲେ । ମାମୁଘର ଆଈଙ୍କ ଠାରୁ ସେ ଯାହା ଉପଦେଶ ଭାବରେ ଶିଖିଥିଲେ, ଶ୍ରୀପତି ବାବୁ ତାଙ୍କୁ ସବୁ ଦୃଷ୍ଟାନ୍ତ ଭାବରେ ଦେଖାଇ ଦେଲେ । ଯଥା : ନିଜ ବାକ୍ୟରେ ଅଟଳ ରହିବା, ଖାଦ୍ୟ ପଦାର୍ଥ ପ୍ରତି ଆବଶ୍ୟକ ଅନୁଯାୟୀ ସଂଯମ ଆଚରଣ କରିବା, ମୌନବ୍ରତ ଧାରଣ କରିବା, ସାଧାରଣ ଜିନିଷକୁ ନେଇ କିଛି ଉପଯୋଗ କରିବା, ଏକାନ୍ତରେ ରହି ମନର ଭାବନାକୁ ସୃଷ୍ଟିମାଧ୍ୟମରେ ପ୍ରକାଶ କରିବା ଇତ୍ୟାଦି ।

ଭିକାରୀ ଚରଣ ଖୁବ୍ ନାଟତାମସା ପ୍ରିୟ ଥିଲେ । ଖେଳକୁଦରେ ମଧ୍ୟ ବହୁତ ଆଗ୍ରହ ଥିଲା । ସେ ଆଗ୍ରହ ସବୁର ଅନ୍ୟତମ ବିଶେଷତ୍ୱ ହେଲା, ଭିକାରୀ ଚରଣ ଯାହା ଦେଖୁଥିଲେ ପରେ ସାଥୀମାନଙ୍କ ମାଧ୍ୟମରେ ସେ ସବୁକୁ ଅଭିନୟ କରାଉଥିଲେ । ତାଙ୍କ ସାଥୀମାନଙ୍କର ସେ ଦଳପତି ଥିଲେ । ଯେତେବେଳେ ବାରିପଦାକୁ କୌଣସି ସର୍କସ, ମ୍ୟାଜିକ୍ ବା ତାମସା ପାର୍ଟି ଆସୁଥିଲେ, ସେମାନେ ଗଲାପରେ ଭିକାରୀ ଚରଣ ସାଥୀମାନଙ୍କ ମାଧମରେ ସେ ସବୁ ଅନୁକରଣରେ ନାନା କଥା ଦେଖାଉଥିଲେ । ସେଥିରେ ସମୟ ସମୟରେ ଅଭିଭାବକମାନେ ବିରକ୍ତି ପ୍ରକାଶ କରୁଥିଲେ ବି ଗୁରୁ ଶ୍ରୀପତି ବାବୁ ଭିକାରୀ ଚରଣଙ୍କ ସପକ୍ଷରେ ଯୁକ୍ତି ବାଢ଼ି ଏଥିରେ ଉତ୍ସାହିତ କରୁଥିଲେ । ଏଇସବୁ ଗୁଣ ଭିକାରୀ ଚରଣଙ୍କୁ ପରବର୍ତ୍ତୀ ଜୀବନରେ ଭିନ୍ନ ବାଟରେ ନେଇଥିଲା ।

ମନ୍ଦିରର ଠାକୁରଙ୍କ ଅନୁକରଣରେ ଭିକାରୀ ଚରଣ ଗୋଟିଏ ବଡ଼ ବାଲିଗରଡାକୁ ଠାକୁର ସଜାଇ, ସେହି ଅନୁକ୍ରମରେ ଠାକୁରଙ୍କ ଚାନ୍ଦୁଆ, ଆଡ଼େଣୀ, ତରାସ ଆଦି ସହିତ ସୁନ୍ଦର ଭାବରେ ସାଜସଜ୍ଜା କରୁଥିଲେ । ଏହି ସାଜସଜ୍ଜା କଳା ଅନେକଙ୍କୁ ମୁଗ୍ଧ କରୁଥିଲା । ଗୁରୁ ଶ୍ରୀପତି ବାବୁ ଯାହା ବତାଇ ଥିଲେ ଗୋଟିଏ, ଶିଷ୍ୟ ଭିକାରୀ ଚରଣ ତାକୁ କରିଦେଲେ କୋଟିଏ ।

## ଗୁରୁସେବାରୁ ଗୋରୁସେବା

ମୟୂରଭଞ୍ଜ ରାଜ୍ୟର ରାଜକର୍ମଚାରୀ ଭାବରେ ଜଗନ୍ନାଥ ପଟ୍ଟନାୟକଙ୍କ ଭଲ ନାଆଁ ଥିଲା । ସହରଠାରୁ ଅଳ୍ପ ଦୂରରେ କିଛି ଚାଷଜମି ଥିଲା, ଚାଷ ଘରଟିଏ ବି ଥିଲା । ସେଠାରେ ଫସଲ ଓ ପନିପରିବା ହୁଏ । ତାଙ୍କ ନିଜ ଗ୍ରାମରୁ ଅନେକ ଲୋକ ଚାକିରି ଉଦ୍ଦେଶ୍ୟରେ ଆସୁଥାନ୍ତି, ସେମାନେ ଚାକିରି ପାଇବା ପର୍ଯ୍ୟନ୍ତ ସେହି ଘରେ ରହୁଥାନ୍ତି । ପ୍ରାୟ ସବୁ ସମୟରେ ଆଠ ଦଶଜଣ ଲୋକ ସେଠାରେ ଥାଆନ୍ତି । ଅମଳ ହେଉଥିବା ଫସଲରୁ ଖିଆପିଆ ଚାଲେ । ଗାଈଗୋରୁ ବି ଅନେକ ଥାଆନ୍ତି । ଲୋକମାନଙ୍କର କର୍ମସଂସ୍ଥାନ ହେବା ପର୍ଯ୍ୟନ୍ତ ମାଗଣାରେ ଖାଇପିଇ ଲୋକେ ରହନ୍ତି ।

ଜଗନ୍ନାଥ ବାବୁ ନିଜେ ଗାଈଗୋରୁ ବଗିଚାର ତଦାରଖ କରିଯାଆନ୍ତି । ସେଠାରେ ଥିବା ଚାକରମାନେ ଯେତେକାମ କଲେ ବି ଗୋରୁଗାଈଙ୍କ କଥା ସେ ନିଜେ ନ ଦେଖିଲେ ସନ୍ତୁଷ୍ଟ ହୁଅନ୍ତି ନାହିଁ । ଭିକାରୀ ଚରଣଙ୍କ ଉପରେ ଏ ସବୁର ବେଶ୍ ପ୍ରଭାବ ପଡ଼ିଛି । ବାପାଙ୍କ ଅନୁପସ୍ଥିତିବେଳେ ନିଜେ ଏସବୁ ଦେଖି ଦେଖି ତାଙ୍କ ମନରେ ଏ ସବୁ ପ୍ରତି ଆଦର ବଢ଼ିଗଲା । ଘର ଗାଈର ଦୁଧ, ବାଡ଼ିର ସଜ ପନିପରିବା, ଚାଷ ଜମିର ଫସଲ ଖାଇଖାଇ ଭିକାରୀ ଚରଣଙ୍କ ସ୍ୱାସ୍ଥ୍ୟର ଯଥେଷ୍ଟ ଉନ୍ନତି ହୋଇଗଲା ।

ତା ସହିତ ପାଠ ପଢ଼ା ଚାଲିଥିଲେ ବି ପଢ଼ାର ବନ୍ଧନୀ ବିଶେଷ ନଥାଏ । ରୁଟିନ୍ ବନ୍ଧା ପାଠପଢ଼ା ପ୍ରତି ଆଗ୍ରହ ନଥିବା ତାଙ୍କର ସ୍ୱାଧୀନଚେତା ମନ ମୋଟେ ଆଗଉ ନଥାଏ । ଶ୍ରୀପତି ବାବୁଙ୍କର ପାଠ ପଢ଼ାର ମାର୍ଗ ସ୍କୁଲ ପଢ଼ାକୁ ଅଳ୍ପ ସମୟ ମଧ୍ୟରେ ଆୟତଃ କରିନେଉଥିଲା । ତା ପରେ ଶ୍ରୀପତି ବାବୁ ସ୍କୁଲ ପାଠରୁ ଆଗୁଆ ଆଗୁଆ ପଢ଼ାଉ ଥିବାରୁ ସ୍କୁଲ ପାଠର ଚାପ ତାଙ୍କର ବେଶି ପଡ଼େ ନାହିଁ । ବାପାଙ୍କ ଚାଷଘରକୁ ଯାଇ ଯାଇ ଭିକାରୀ ଚରଣଙ୍କର ଗୋରୁଗାଈ ପ୍ରତି ମମତା ବଢ଼ିବଢ଼ି ଯାଇଥାଏ । ଏ ପାଖରେ ଗୁରୁ ଶ୍ରୀପତି ବାବୁଙ୍କୁ ରୋଷେଇବାସ ଠାରୁ ଆରମ୍ଭ କରି ନାନାଦି କାର୍ଯ୍ୟରେ ସହାୟତା କରନ୍ତି । ସମତାଲରେ ଗୁରୁ ସେବାରୁ ଗୋରୁସେବା ପର୍ଯ୍ୟନ୍ତ କାମ ଆଗେଇ ଚାଲିଥାଏ ।

ବାରିପଦାର ପାଠ ଶେଷ ହେବାପରେ ସେ ଗାଁକୁ ଆସିଗଲେ । ତାପରେ କଟକରେ ରହି କଲେଜ ପଢ଼ା ଆରମ୍ଭ ହେଲା । ଏହି ସମୟ ଭିତରେ ତାଙ୍କୁ ଅନେକ

କିଛି ହରାଇ ନୂଆ କିଛି ପାଇବାକୁ ହେଲା । ସେ ବାରିପଦାର ଏକ ସୁସ୍ଥ ପରିବେଶ ହରାଇଲେ । ସାଙ୍ଗ ସାଥୀ, ମୁକ୍ତ ଆବହାଓ୍ୱା ଛାଡ଼ି ଏକ ପରିବର୍ତ୍ତିତ ପରିସ୍ଥିତିରେ ଆସି ରହିଲେ । ଶ୍ରୀପତି ବାବୁଙ୍କ ଠାରୁ ଆତ୍ମନିର୍ଭରଶୀଳ ହେବାପାଇଁ ଯେଉଁ ଶିକ୍ଷା କରିଥିଲେ ତାହା ଅବଶ୍ୟ ପରବର୍ତ୍ତୀ ଜୀବନରେ ସାହାଯ୍ୟ କଲା, ମାତ୍ର ହଠାତ୍ ବାରିପଦା ଛାଡ଼ିବା ପରେ ଏକ ଶୃଙ୍ଖଳା ଭିତରେ ଚାଲିଥିବା ଜୀବନ ଶଗଡ଼ ଗୁଳାରୁ ଥମିଗଲା ପରି ହେଲା ।

## ଜୀବନର ଆଉ ଗୋଟିଏ ଅଧ୍ୟାୟ

ବାରିପଦାରୁ ପାଠ ଶେଷ ହେଲା ପରେ ଭିକାରୀ ଚରଣଙ୍କୁ କଲେଜ ପଢ଼ାପାଇଁ କଟକରେ ରହିବାକୁ ହେଲା । ଏଇ ଦଶବର୍ଷ ଭିତରେ ଗମନାଗମନର ଅନେକ ସୁବିଧା ହୋଇଯାଇଥିବାରୁ ଯୋଗାଯୋଗ କ୍ଷେତ୍ରରେ ବହୁ ପରିବର୍ତ୍ତନ ହୋଇଯାଇଥାଏ । ଏବେ ଗାଁକୁ ଯିବାରେ ବିଶେଷ ଅସୁବିଧା ନଥାଏ । କଟକରୁ କେନ୍ଦ୍ରାପଡ଼ାକୁ ଷ୍ଟିମାର ଚଳାଚଳ କରୁଥାଏ । ବାଟରେ ଦାନପୁର ପାଖରେ ଓହ୍ଲାଇ ଗଲେ ଯାଇ ଗାଁ ।

ଏଣ୍ଟ୍ରାନ୍ସ ପରୀକ୍ଷାଫଳ ବାହାରିବା ସଙ୍ଗେ ସଙ୍ଗେ ପିତାମାତା ଓ ମାତାମହୀଙ୍କ ଇଚ୍ଛାଅନୁସାରେ ତାଙ୍କର ବିବାହ ହୋଇଗଲା । ବାରିପଦାର ରୁଟିନ୍ ଜୀବନରେ ବାଧା ଦେଖାଦେଲା । ଖାଦ୍ୟପେୟ ଠାରୁ ଖେଳ ପାଠପଢ଼ା ସବୁଥିରେ ବ୍ୟତିକ୍ରମ ଦେଖାଦେଲା । ଦଶବର୍ଷର ଶୃଙ୍ଖଳିତ ଜୀବନ ଯେପରି ପଘାଛିଣ୍ଡା ଦାମୁରି ପରି ନାଚିବାକୁ ଲାଗିଲା । ନବଯୁବକର ଉଚ୍ଛଳ ମନ ପଞ୍ଜୁରୀ ଭିତରୁ ଉଡ଼ି ପଳାଇବାକୁ ବାହାରିଲା । କଟକରେ ଖାଇବା ପିଇବାରେ ସେପରି ସୁବିଧା ନଥାଏ । ସୁବିଧା ପାଇଲେ ଶନିବାର, ରବିବାର ଗାଁକୁ ଚାଲିଯାଆନ୍ତି । ଅନ୍ୟ କୌଣସି ଛୁଟି ବା ସୁଯୋଗ ପାଇଲେ ଗାଁକୁ ଚାଲିଯାଉଥିଲେ । ସବୁ ସମୟରେ ନିଜ ଇଚ୍ଛା ଅନୁସାରେ ଷ୍ଟିମାର ମିଳେନା । ଏଣୁ ଅନେକ ସମୟରେ ଏଇ ତିରିଶ ମାଇଲ ବାଟ ଚାଲି ଚାଲି ଗାଁକୁ ଯାଆନ୍ତି ।

ଖାଦ୍ୟପେୟରେ ଅନିୟମିତତା ଯୋଗୁ ପ୍ରଥମେ ଦୃଷ୍ଟିହୀନତା ଓ ପରେ ପେଟର ଶୂଳରୋଗ ଆରମ୍ଭ ହେଲା । ପେଟର ରୋଗ କ୍ରମେ ଏପରି ବୃଦ୍ଧି ପାଇଲା ଯେ ପ୍ରାଣାନ୍ତକ କଷ୍ଟ ଭୋଗ କରିବାକୁ ପଡୁଥିଲା । ଏ ଯନ୍ତ୍ରଣା ସବୁଦିନେ ନଥାଏ, ମଝିରେ ମଝିରେ ବାହାରେ । ପ୍ରଥମ ବର୍ଷ ପ୍ରାୟ ତିନି ଚାରିଥର ବାହାରିଥିଲା, କ୍ରମେ

କ୍ରମେ ଏହା ବଢ଼ି ଦୁଇ ତିନିବର୍ଷ ମଧ୍ୟରେ ପ୍ରାୟ ମାସକୁ ଥରେ ଲେଖା କଷ୍ଟ ଆରମ୍ଭ ହେଲା । ପେଟ ଶୂଳ ଆରମ୍ଭ ହେଲେ ଭୀଷଣ କଷ୍ଟରେ ପ୍ରାୟ ଶେଷକୁ ନିସ୍ତେଜ ହୋଇପଡ଼ୁଥିଲେ । ପ୍ରଥମେ ପ୍ରଥମେ ଘଣ୍ଟାଏ ଦୁଇଘଣ୍ଟା ହେଉଥିଲା, କ୍ରମେ ଏହା ବଢ଼ି ବଢ଼ି ଦିନେ ଦେଢ଼ଦିନ ପର୍ଯ୍ୟନ୍ତ କଷ୍ଟ ଲାଗି ରହିଲା । ଯନ୍ତ୍ରଣା କମିଲା ପରେ ମଧ୍ୟ ଦୁର୍ବଳତା କମେ ନାହିଁ । ଅନେକ ଦିନ ଧରି ସେ କଷ୍ଟର ପ୍ରଭାବ ଲାଗିରହେ ।

ପିତା ଜଗନ୍ନାଥ ବାବୁ ବାରିପଦାରେ ଥାଇ ନାନା ପ୍ରକାର ଚେଷ୍ଟାକରି ଔଷଧ ପଠାନ୍ତି । ଶ୍ୱଶୁର କଟକରେ ମଧ୍ୟ ନାନା ପ୍ରକାର ଚିକିତ୍ସାର ବ୍ୟବସ୍ଥା କରୁଥିଲେ । ମଝିରେ ମଝିରେ ସାମାନ୍ୟ ଉପଶମ ହେଲେ ମଧ ରୋଗ ଭଲ ହେବାର କୌଣସି ଲକ୍ଷଣ ଦେଖାଗଲା ନାହିଁ ।

ଭିକାରୀ ଚରଣଙ୍କର ଶୂଳରୋଗ ଭଲ ହେବା ସଂପର୍କରେ ସେ ଏକ ଘଟଣାର ଅବତାରଣା କରୁଥିଲେ । ସେ ସମୟର ଘଟଣା । ଦୁଇଜଣ ସାଥୀ ମିଶି ତଗର-ପଡ଼ାରେ ଗୋଟିଏ ବସାଘର ନେଇଥାଆନ୍ତି । ସେ ସମୟରେ ତାଙ୍କର ଉତ୍କଟ ଶୂଳରୋଗ ଆରମ୍ଭ ହେଲା । ଏହାର ତୀବ୍ରତା ଏତେ ବୃଦ୍ଧି ପାଇଲା ଯେ, ଭିକାରୀ ଚରଣ ଜୀବନରେ ଆଶା ଛାଡ଼ିଦେଇଥିଲେ । ରୋଗ ଆରମ୍ଭ ହେବାର ପ୍ରଥମ ବର୍ଷରେ ପ୍ରାୟ ୩/୪ଥର ସେ ଏଥିରେ ଆକ୍ରାନ୍ତ ହେଲେ । ଆକ୍ରାନ୍ତ ହେବାର କିଛିଦିନ ପରେ ଯନ୍ତ୍ରଣା ଚାଲିଯାଏ । ତେବେ ସାଧାରଣ ଶକ୍ତି ଅଭାବରୁ ଖୁବ୍ ଦୁର୍ବଳ ଲାଗେ ଏବଂ ଖାଇବାରୁ ରୁଚି ଚାଲିଯାଏ । ଶେଷ ଆଡକୁ ପ୍ରାୟ ପ୍ରତ୍ୟେକ ମାସରେ ଏହି ଆକ୍ରମଣ ହେଲା । ଥରେ ଯନ୍ତ୍ରଣା ଆରମ୍ଭ ହୋଇଗଲେ ୧୭/୧୮ ଘଣ୍ଟା ପର୍ଯ୍ୟନ୍ତ ଲାଗିରହେ । ଯନ୍ତ୍ରଣା କମିଗଲେ ପୁଣି ସ୍ୱାଭାବିକ ଅବସ୍ଥା ଆସିବାକୁ ତିନିସପ୍ତାହ ଲାଗିଯାଉଥିଲା ଏବଂ ଏହି ସମୟରେ ଦ୍ୱିତୀୟ ଆକ୍ରମଣ ଆରମ୍ଭ ହୋଇଯାଉଥିଲା । ବାପା ବାରିପଦାରେ ଥିଲେ ମଧ ଶ୍ୱଶୁର କଟକରେ ରହୁଥିଲେ । ବହୁ ପ୍ରକାରର ଚିକିତ୍ସା ବ୍ୟବସ୍ଥା କରାଯାଉଥିଲେ ବି କୌଣସିଥିରୁ କିଛି ଉପକାର ମିଳୁନଥିଲା ।

ଏତିକିବେଳେ ଜଣେ ବୃଦ୍ଧବ୍ୟକ୍ତି ଦେବପ୍ରେରିତ ଭଳି ତାଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ନିଜକୁ ଜଣେ କବିରାଜ ବୋଲି ପରିଚୟ ଦେଇ ତାଙ୍କଠାରୁ ଗୋଟିଏ ଔଷଧ ଖାଇବାକୁ ଜିଗର କଲେ । ଭିକାରୀ ଚରଣଙ୍କର ସମସ୍ତ ଔଷଧ ଉପରୁ ଭରସା ତୁଟିଯାଇଥିଲା । ତଥାପି ସେ ତାଙ୍କୁ କେବଳ ବିଦାୟ କରିଦେବା ଉଦ୍ଦେଶ୍ୟରେ ଟଙ୍କାଟିଏ ଦେଲେ । ପରଦିନ ସେଇ କବିରାଜ କିଛି ଚେରମୂଳୀ ନେଇ ଆସି ପହଞ୍ଚିଗଲେ । ସେ ସବୁ କଟାକୁଟି କରିବା ଦରକାର । ଭିକାରୀ ଚରଣଙ୍କ

ବସାରେ ତା'ର ସୁବିଧା ନାହିଁ । ତେଣୁ ଭିକାରୀ ଚରଣ ତାଙ୍କୁ ନିଜ ଶ୍ୱଶୁର ଘରକୁ ପଠାଇଲେ । ଏମିତି ଔଷଧ ପ୍ରସ୍ତୁତ ହୋଇଗଲା ଏବଂ ମୋଦକ ଭଳି ସୁସ୍ୱାଦୁ ସେଇ ଔଷଧରୁ ଭିକାରୀ ଚରଣ ଗୋଟିଏ ଖାଇଲେ । କବିରାଜ ପରେ ଆସିବି କହି ବିଦାୟ ନେଇ ଚାଲିଗଲେ । ଏ ଭିତରେ ତାଙ୍କର ରୋଗ ଆକ୍ରମଣର ସମୟ ହୋଇଗଲା । ଭିକାରୀ ଚରଣ ମଧ୍ୟ ବିଛଣା ପକାଇ ଏଥିପାଇଁ ପ୍ରସ୍ତୁତ ହୋଇ ରହିଲେ । କବିରାଜ ଆସି ତାଙ୍କୁ ଦେଖିଲେ । ବିବରଣୀ ଶୁଣି ତାଙ୍କ ଦେହରେ ଟିକିଏ ହାତ ବୁଲାଇ ଦେଇ ଚାଲିଗଲେ । ଯାଦୁଭଳି ତାଙ୍କର ଯନ୍ତ୍ରଣା ହଠାତ୍ କମିଗଲା । ତା'ପରଠୁ ତାଙ୍କୁ ଆଉ କେବେ ବି ସେ ମରଣାନ୍ତକ ଯନ୍ତ୍ରଣା ଭୋଗ କରିବାକୁ ପଡ଼ିନାହିଁ ।

କବିରାଜ ମଧ୍ୟ ତାଙ୍କୁ ଆଉ ସାକ୍ଷାତ୍ କରିନାହାନ୍ତି । ଭିକାରୀ ଚରଣ ତାଙ୍କର ସନ୍ଧାନନେବା ପାଇଁ ବହୁତ ଚେଷ୍ଟା କରି ତହିଁରେ ସଫଳତା ପାଇ ନାହାନ୍ତି । ଭଗବାନ ଯେ କବିରାଜ ବେଶରେ ସ୍ୱୟଂ ଆସି ତାଙ୍କୁ ଆରୋଗ୍ୟ କରି ଦେଇ ଯାଇଛନ୍ତି, ଶେଷ ପର୍ଯ୍ୟନ୍ତ ଭିକାରୀ ଚରଣଙ୍କର ଏଇ ଧାରଣା ବଦ୍ଧମୂଳ ହୋଇଛି ।

ସଂସାରରେ ବେଳେବେଳେ ଏମିତି ଘଟେ । ଦାରୁରେ ସାଧ୍ୟ ହେଉ ନଥିବା ବିଷୟ ଦୁଵରେ ସାଧ୍ୟ ହୁଏ । ମଣିଷ ତା'ର ସୀମିତ ବୁଦ୍ଧି ଓ ଜ୍ଞାନ ଦ୍ୱାରା ଏହାର କୌଣସି ବ୍ୟାଖ୍ୟା କରିପାରେ ନାହିଁ । ଭିକାରୀ ଚରଣଙ୍କ ଜୀବନରେ ଏହାହିଁ ହୋଇଥିଲା । ଜୀବନକୁ ଶୃଙ୍ଖଳିତ କରିବାପାଇଁ ଏହାହିଁ ହୁଏତ ଥିଲା ତାଙ୍କପାଇଁ ଐଶ୍ୱରୀୟ ଚେତାବନୀ । ରୋଗରୁ ମୁକ୍ତିପରେ ଭିକାରୀ ଚରଣ ନିଜର ଜୀବନକୁ ଏକ କଠିନ ଶୃଙ୍ଖଳା ଭିତରେ ବାନ୍ଧି ରଖିଲେ । ତା'ପରେ ସେ ଜୀବନରେ ଆଉ କେବେ କୌଣସି ଗୁରୁତର ଅସୁସ୍ଥତାର ସମ୍ମୁଖୀନ ହୋଇନାହାନ୍ତି ।

## କଟକ ନଗର ଧବଳ ଟଗର

ବାରିପଦା ରହଣି କାଳରେ ଗୃହଶିକ୍ଷକ ଶ୍ରୀ ଶ୍ରୀପତି ରାୟଙ୍କ ତତ୍ତ୍ୱାବଧାନରେ ଶିକ୍ଷାଲାଭ ସଙ୍ଗେସଙ୍ଗେ କବିତା ରଚନାର ମୂଳଦୁଆ ପଡ଼ିଥିଲା । ମାତ୍ର ସାହସ ଅଭାବରୁ ତାହା ପ୍ରକାଶିତ ହୋଇପାରି ନଥିଲା । ଭିକାରୀ ଚରଣ ଏଣ୍ଟ୍ରାନ୍ସ ପରୀକ୍ଷା ଦେବାକୁ ଆସି କଟକରେ କିଛିଦିନ ରହିଲେ । ସେ ସମୟରେ କଟକ ବି ସମସାମୟିକ ଲୋକମାନଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ ଥିଲା । ଭିକାରୀ ଚରଣ କଟକ ରହଣୀକାଳରେ ନାନା ସ୍ଥାନ ବୁଲି ଦେଖିଲେ । ବାରବାଟୀ ଦୁର୍ଗ ମଧ୍ୟରେ ବୁଲାବୁଲି କରି ଗ୍ରାମକୁ ଫେରିଲା ପରେ 'କଟକ ବିହାର' ନାମକ ନାଟକ ରଚନା କଲେ । ସେ ନାଟକ ପାଣ୍ଡୁଲିପି ଅବସ୍ଥାରେ ଥାଏ । ଏହା ୧୮୯୫ ମସିହାର କଥା ।

କଲେଜରେ ନାମଲେଖା ଓ ପଢ଼ା ଆରମ୍ଭ ହେବା-ପରେ ଭିକାରୀ ଚରଣଙ୍କ ସାଥିମାନେ 'କଟକ ବିଜୟ' ନାଟକର ପାଣ୍ଡୁଲିପି ପଢ଼ିଲେ । କେତେଜଣ ଅନ୍ତରଙ୍ଗ ସାଥୀଙ୍କ ଠାରୁ ସାହସ ପାଇ ସେ ଏହି ପାଣ୍ଡୁଲିପିକୁ ତାଙ୍କ ଉପର ଶ୍ରେଣୀରେ ପଢୁଥିବା କବି ନନ୍ଦକିଶୋର ବଳଙ୍କୁ ଦେଖାଇଲେ । ନନ୍ଦକିଶୋରଙ୍କର ଛାତ୍ରାବସ୍ଥାରେ ବି 'ଉତ୍କଳ ସାହିତ୍ୟ'ର ସଂପାଦକ ଶ୍ରୀ ବିଶ୍ୱନାଥ କରଙ୍କ ସହିତ ଉତ୍ତମ ପରିଚୟ ଥିଲା । ଦିନେ ନନ୍ଦକିଶୋର ଭିକାରୀ ଚରଣଙ୍କୁ ନେଇ ପାଣ୍ଡୁଲିପି ସହିତ ବିଶ୍ୱନାଥ କରଙ୍କୁ ଦେଖାକଲେ । ବିଶ୍ୱନାଥ କର ଲେଖାଟି ପଢ଼ିଲା ପରେ ସେମାନଙ୍କୁ ପରାମର୍ଶ ଦେଲେ ପାଣ୍ଡୁଲିପି ସହିତ ଭକ୍ତକବି ମଧୁସୂଦନଙ୍କୁ ସାକ୍ଷାତ କରିବା ପାଇଁ । ଦୁଇବନ୍ଧୁ ମଧୁସୂଦନଙ୍କୁ ସାକ୍ଷାତ କଲାପରେ ସେ ସ୍ୱତଃପ୍ରବୃତ୍ତ ହୋଇ 'ନାଟକ ବିଜୟ' ନାଟକ ପ୍ରକାଶ ନିମନ୍ତେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କୁ ସାହାଯ୍ୟ ପାଇଁ ଚିଠି ଲେଖିଲେ । ମହାରାଜାଙ୍କ ଆର୍ଥିକ ସହାୟତାରେ 'କଟକ ବିଜୟ' ନାଟକ ଛପା ହେବା ପରେ ଭିକାରୀ ଚରଣ ବାହାରେ ଭଲ ଭାବରେ ପରିଚିତ ହୋଇଗଲେ । ଠିକ୍ ତା ପରେ ପରେ ଭିକାରୀ ଚରଣ 'ଉତ୍କଳ ସାହିତ୍ୟ'ରେ ଧାରାବାହିକ ଭାବରେ ଲେଖିବାକୁ ଆରମ୍ଭ କଲେ ।

## ମୁଣ୍ଡ ବିକିଦେଲେ ତୁଣ୍ଡ ବନ୍ଦହେବ

ଛାତ୍ରାବସ୍ଥାରେ ଭିକାରୀ ଚରଣ 'କଟକ ବିଜୟ' ନାମକ ଏକ ଐତିହାସିକ ନାଟକ ରଚନା କରି ବିଶେଷ ପରିଚିତ ହୋଇପାରିଥିଲେ । ସେତେବେଳେ ଓଡ଼ିଆରେ ନାଟକ ସଂଖ୍ୟା ଖୁବ୍ ଅଳ୍ପ । ଥରେ ଗ୍ରାମରୁ କଟକ ଆସିଲାବେଳକୁ ଖବର ପାଇଲେ ଯେ ଭକ୍ତକବି ମଧୁସୂଦନ ରାଓ ତାଙ୍କୁ ଖୋଜୁଥିଲେ । ପୂର୍ବରୁ ସାହିତ୍ୟ-ଚର୍ଚ୍ଚା ମାଧ୍ୟମରେ ମଧୁସୂଦନଙ୍କ ସହିତ ତାଙ୍କର ପରିଚୟ ଥିଲା । ଭିକାରୀ ଚରଣଙ୍କ ଉପର ଶ୍ରେଣୀରେ ପଲ୍ଲୀକବି ନନ୍ଦକିଶୋର ବଳ ପାଠ ପଢୁଥିଲେ । ଏହି ଲେଖକ ମଣ୍ଡଳୀ ଭିତରେ ପରସ୍ପର ସହଯୋଗ ରହିଥାଏ । 'ଉତ୍କଳ ସାହିତ୍ୟ'ର ସଂପାଦକ ବାଗ୍ମୀ ବିଶ୍ୱନାଥ କର ଏ ସମସ୍ତ ସାହିତ୍ୟିକ ଲେଖକମାନଙ୍କୁ ଏକତ୍ରିତ କରି, ସେମାନଙ୍କର ସୃଷ୍ଟିର ପୃଷ୍ଠପୋଷକତା କରୁଥାନ୍ତି । ଓଡ଼ିଆ ଭାଷା ଓ ସାହିତ୍ୟର ସଂକଟଜନକ ପରିସ୍ଥିତିରେ ବିଶ୍ୱନାଥ କର ମଙ୍ଗୁଆଳ ପରି ସାହିତ୍ୟ ନାବକୁ ବହି ଚାଲିଥାନ୍ତି ।

ଭିକାରୀ ଚରଣ କବି ମଧୁସୂଦନଙ୍କୁ ଦେଖାକଲା ପରେ ସେ କହିଲେ ଯେ ବାମଣ୍ଡାର ରାଜା ସାହିତ୍ୟପ୍ରେମୀ ସାର୍ ବାସୁଦେବ ସୁଢ଼ଳଦେବ ଭିକାରୀ ଚରଣଙ୍କୁ

ବାମଣ୍ଡାରେ ଚାକିରି କରିବା ପାଇଁ ଡକାଇଛନ୍ତି । ସେ ଚିଠି ଖଣ୍ଡକ ପଢ଼ି ଶୁଣାଇଲେ ଯେ ସୁଢ଼ଲଦେବ 'କଟକ ବିଜୟ'ର ପ୍ରଣେତା ଭିକାରୀ ଚରଣଙ୍କୁ ବାମଣ୍ଡା ପଠାଇବାକୁ ଲେଖିଛନ୍ତି । ଭିକାରୀ ଚରଣ ମଧୁସୂଦନଙ୍କୁ ଭରସି କରି କିଛି କହି ପାରିଲେ ନାହିଁ । ହଁ ଓ ନାହିଁ ଦ୍ୱନ୍ଦ୍ୱ ମଧ୍ୟରେ ଅନେକ ସମୟ ବିତିଗଲା । ତା'ପରେ ମଧୁସୂଦନ ପଚାରିଲେ, ''କ'ଣ ଭିକାରୀ ନିରବ ରହିଲ କାହିଁକି ?''

ଭିକାରୀ ଚରଣ ମଧୁସୂଦନଙ୍କ ମୁହଁକୁ ନ ଚାହିଁ ଉତ୍ତର ଦେଲେ, ''ମୁଣ୍ଡ ବିକିଦେଲେ, ତୁଣ୍ଡ ବନ୍ଦ ହେବ ।'' ମଧୁସୂଦନ କହିଲେ, ''ସାର୍ ସୁଢ଼ଲ ଦେବଙ୍କ ପାଖରେ ତୁଣ୍ଡ ବନ୍ଦ ହେବାର କାରଣ ନାହିଁ କି ମୁଣ୍ଡ ବିକ୍ରିର ଆଶଙ୍କା ନାହିଁ । ସେ ସାହିତ୍ୟାନୁରାଗୀ ଉଦାର ହୃଦୟର ବ୍ୟକ୍ତି । ବର୍ତ୍ତମାନ ତ ପାଠପଢ଼ା ଶେଷ ହୋଇଯାଇଛି, ତୁମେ ବାମଣ୍ଡା ଯାଅ ।'' ଅନେକ ଆଲୋଚନା ପରେ ଭିକାରୀ ଚରଣଙ୍କର ବାମଣ୍ଡା ଯିବାପାଇଁ ସ୍ଥିର ହେଲା । ସେହି ଅନୁସାରେ ନିର୍ଦ୍ଧାରିତ ଦିନ ଓ ସମୟ ଜଣାଇ ଦିଆଗଲା ।

ସେତେବେଳକୁ ରେଳଗାଡ଼ି ଚଳାଚଳ ଆରମ୍ଭ ହୋଇଯାଇଥାଏ । ଭିକାରୀ ଚରଣ ପୂର୍ବ ନିର୍ଦ୍ଧାରିତ ସମୟ ଅନୁସାରେ ଦେବଗଡ଼ ବାହାରିଲେ । ବାମଣ୍ଡା ଷ୍ଟେସନରେ ଓହ୍ଲାଇବା ପରେ ଜାଣିବାକୁ ପାଇଲେ ଯେ, ସେଠାରୁ ଦେବଗଡ଼ ଷାଠିଏ ମାଇଲ ବାଟ । ସେଇଠୁ ସେ ସ୍ଥିର କଲେ ଯେ ସେଠାରୁ ଫେରନ୍ତା ଗାଡ଼ିରେ ଘରକୁ ଫେରି ଆସିବେ ।

ମାତ୍ର ବାସୁଦେବ ସୁଢ଼ଲଦେବ ଯେପରି ଗୁଣଗ୍ରାହୀ ଥିଲେ ସେହିପରି ଦାୟିତ୍ୱ ସଂପନ୍ନ ବି ଥିଲେ । ସେ ପୂର୍ବରୁ ଭିକାରୀ ଚରଣଙ୍କ ପାଇଁ ସବୁ ପ୍ରକାର ବନ୍ଦୋବସ୍ତ କରାଇଥିଲେ ଓ ନିଜେ ଚାରିଟା ବେଳକୁ ସେଠାରେ ପହଁଚିବେ ବୋଲି ଖବର ଦେଇଥିଲେ । ସେ ଦିନ ବିଶ୍ରାମ ସ୍ଥଳରେ ରହିଥିବା ଅବସ୍ଥାରେ ନିଜେ ମହାରାଜା ଆସି ଭିକାରୀ ଚରଣଙ୍କୁ ଦେଖାକଲେ । ମହାରାଜାଙ୍କର ମହାନୁଭବତା ଓ ଉତ୍ତମ ବ୍ୟବହାରରେ ଭିକାରୀ ଚରଣଙ୍କ ଧାରଣା ପୂରାପୂରି ବଦଳି ଗଲା । ତା ପରେ ତାଙ୍କୁ ହାତୀରେ ଦେବଗଡ଼ ଯିବାପାଇଁ ବ୍ୟବସ୍ଥା କରି ମହାରାଜ ରାୟପୁର ଯିବାକୁ ବାହାରିଲେ ।

ସାର୍ ବାସୁଦେବ ସୁଢ଼ଲଦେବଙ୍କ ରାଜ୍ୟ ବାମଣ୍ଡାର ରାଜଧାନୀ ବୁଧ-ହଂସ-କେଳିସର ଦେବଦୁର୍ଗର ଅବସ୍ଥିତି ଓ ଶାସନଧାରା ଭିକାରୀ ଚରଣଙ୍କୁ ମୋହିତ

କରିଥିଲା । ମାତ୍ର କୌଣସି ସ୍ଥାନରେ ଚାକିରି କରି ବାନ୍ଧି ହେବାର ମନୋବୃତ୍ତି ତାଙ୍କର ନଥିଲା । ଯଥେଷ୍ଟ ସ୍ୱାଧୀନତା ପାଇଥିଲେ ବି ତଥାପି କେତେକ କଟକଣା ମଧ୍ୟରେ ଗତି କରିବାକୁ ପଡୁଥିଲା । ବାସୁଦେବ ସୁଡ଼ଳଦେବଙ୍କର ଭିକାରୀଚରଣଙ୍କ ପ୍ରତି ମନୋଭାବକୁ ବଡ଼ ଆନ୍ତରିକତାର ସହିତ ସ୍ମରଣ କରୁଥିଲେ ସେ । କିନ୍ତୁ ସେଠାରୁ ଫେରିବା ପାଇଁ ସେ କିପରି ମହାରାଜାଙ୍କର ସମ୍ମୁଖୀନ ହେବେ ସେହି ସୁଯୋଗ ଅପେକ୍ଷାରେ ଥାଆନ୍ତି ।

ବ୍ରିଟିଶ ସରକାରଙ୍କ ତରଫରୁ ବଣାଇ ପାଲଲହଡ଼ା ଭଳି ଛୋଟଛୋଟ ଷ୍ଟେଟର ତତ୍ତ୍ୱାବଧାନ ପାଇଁ ସାର୍ ବାସୁଦେବ ସୁଡ଼ଳଦେବଙ୍କୁ ଅଭିଭାବକ ଦାୟିତ୍ୱ ଦିଆଯାଇଥାଏ । ନିଜ ରାଜ୍ୟ ସହିତ ଏହି ଦୁଇ ରାଜ୍ୟର ଯୁବରାଜଙ୍କୁ ତାଲିମ ଦେବା ଓ ରାଜ୍ୟର ଭଲମନ୍ଦ ବୁଝିବାର ଦାୟିତ୍ୱ ବାମଣ୍ଡା ରାଜାଙ୍କ ଉପରେ ଥାଏ । ବଣାଇ ଯୁବରାଜ ବାମଣ୍ଡା ରାଜାଙ୍କ ଜାମାତା । ଭିକାରୀ ଚରଣଙ୍କୁ ଏଇ ଦୁଇ ରାଜାଙ୍କର ଶିକ୍ଷକ ଭାବରେ ନିଯୁକ୍ତି ଦିଆଯାଇଥାଏ । ବାମଣ୍ଡା ସ୍କୁଲରେ ଏଇ ଦୁଇ ଭାବୀ-ରାଜା ଲେଖାପଢ଼ା ଶିକ୍ଷା କରୁଥିଲେ । ପାଲଲହଡ଼ା ରାଜାଙ୍କ ପାଇଁ ଆଗରୁ ଜଣେ ବଙ୍ଗୀୟ ଭଦ୍ରଲୋକ ନିଯୁକ୍ତ ଥିଲେ । ତାପରେ ଭିକାରୀ ଚରଣ ଆସି ସେଠାରେ ଯୋଗଦେଲେ ।

ଇଂରେଜ ସରକାରଙ୍କ ନିୟମକୁ ସମ୍ମାନ ଦେଇ ଏହିଭଳି ରାଜାମାନଙ୍କୁ ପଢ଼ାଇବାର ବ୍ୟବସ୍ଥା ହୋଇଥାଏ । ଛତୁ ଉଠା କାଠ, ନିଶ ଉଠା ପାଠ କାମକୁ କିଛି ପାଏ ନାହିଁ । ଏହି ସମବୟସ୍କ ଛାତ୍ରମାନଙ୍କୁ ପଢ଼ାଇବା ମଧ୍ୟ ସେପରି ଉତ୍ସାହଜନକ ହେଉନଥାଏ । ରାଜପରିବାରରେ ବଢ଼ିଥିବା ଟେଢ଼ା ବାଉଁଶ ଭଳି ପାକଲିଆ ରାଜକୁମାରଙ୍କୁ ସିଧା କରିବା ବିଶେଷ ତୃପ୍ତିକର ହେଉନଥାଏ । ଏଣେ ଭିକାରୀ ଚରଣ ଲ ଲେକ୍‌ଚର ଶେଷ କରିଥାନ୍ତି, କେବଳ ପରୀକ୍ଷା ଦେବା କଥା । ଏଣୁ ଭିକାରୀ ଚରଣ ଛଅ ମାସ ପରେ ବାମଣ୍ଡା ରାଜ୍ୟ ଛାଡ଼ିବାକୁ ମନସ୍ଥ କଲେ ।

ଭିକାରୀ ଚରଣ ଚାକିରି କରିବା ପୂର୍ବରୁ ପିତାଙ୍କୁ ଜଣାଇ ନଥିଲେ । ଏହାପରେ ଚାକିରି ଛାଡ଼ିବା ମଧ୍ୟ ପିତାଙ୍କ ଅଗୋଚରରେ ହୋଇଗଲା । ବାସୁଦେବ ସୁଡ଼ଳଦେବଙ୍କୁ କହି ଓ ନିଜର ପାଠପଢ଼ିବା ଉଦ୍ଦେଶ୍ୟ ଜଣାଇ ଟଙ୍କା ପଇସା ସଂଗ୍ରହ କରି ବାମଣ୍ଡାରୁ ବିଦାୟ ନେଇ ସେ କଲିକତା ଚାଲିଲେ । କଲିକତା ହାଇକୋର୍ଟରେ ଓକିଲାତି କରୁଥିବା ଜଣେ ଏଡ୍‌ଭୋକେଟ ଶ୍ରୀ ଗିରୀଶଚନ୍ଦ୍ର ପାଇଙ୍କ ତତ୍ତ୍ୱାବଧାନରେ ଓକିଲାତି ଅଭ୍ୟାସ କରିବାକୁ ଲାଗିଲେ ।

## ଭିକାରୀରୋଗ

ବାମଣ୍ଡାରୁ ଭିକାରୀ ଚରଣ ଓକିଲାତି ପ୍ରାକ୍ଟିସ ପାଇଁ କଲିକତା ଯାତ୍ରା କଲେ । ସେତେବେଳେ କଲିକତାରେ ଲୋକ ସଂଖ୍ୟା କମ୍ ଥିଲା । ମାତ୍ର ରହିବା ପାଇଁ ଘର ବି ସେହି ଅନୁପାତରେ କମ୍ ଥାଏ । ବହୁ କଷ୍ଟରେ ଖୋଜାଖୋଜି କରି ରହିବା ପାଇଁ ଘରଟିଏ ପାଇଲେ । ଗୋଟିଏ ଛତା କାରଖାନା ଓ ମ୍ୟାପ ଫାଉଣ୍ଡାରୀର ଉପର ଘର କେତୋଟିରେ ଲୋକ ରହୁଥିଲେ । ସେ ଅଂଚଳରେ ଅନେକ ଲୋକ ରହୁଥିଲେ ହେଁ ସମସ୍ତେ ପ୍ରାୟ ହୋଟେଲରେ ଖାଉଥିଲେ । ପ୍ରତି ଲୋକ ପାଇଁ ଜଣେ ମଣିଷ ଶୋଇବା ଅନୁପାତରେ ଜାଗା ଥାଏ । ଭିକାରୀ ଚରଣଙ୍କର ପୂର୍ବରୁ ପେଟଶୂଳ ରୋଗ ଥିବାରୁ ସେ ପ୍ରାୟ ହୋଟେଲ ଖାଇବା ବନ୍ଦ କରିଦେଇଥିଲେ । ଏଣୁ ସେ ନିଜର ରୋଷେଇ ପାଇଁ ଖଣ୍ଡିଏ ଲୁହା ଚୁଲି ଆଣିପକାଇଲେ । ସେଥିରେ କୋଇଲା ଦେଇ ରୋଷେଇ କରିବାକୁ ହୁଏ ।

ସେ ଅଞ୍ଚଳରେ ପ୍ରାୟ ଦୁଇଶହ ଲୋକ ରହୁଥିଲେ । ସମସ୍ତଙ୍କ ପାଇଁ ମାତ୍ର ତିନିଗୋଟି ପାଇଖାନା । ଭିକାରୀ ଚରଣ ପ୍ରଥମ ଦିନ ଦେଖିଲେ, ପ୍ରାୟ ପ୍ରତି ପାଇଖାନା ଆଗରେ ଆଠ ଦଶ ଜଣ ଲୋକ ଧାଡ଼ିବାନ୍ଧି ରହିଥାନ୍ତି । ସାମାନ୍ୟ ଫଟା ଟିଣରେ ପାଣି ଆଣିଥିବା ଲୋକର ଏଇ ଅପେକ୍ଷା ସମୟ ଭିତରେ ପାଣି ସରିଗଲେ ସେ ପୁଣି ପାଣିକଳ ପାଖକୁ ଦଉଡୁ ଥାଏ । ପାଣିକଳ ପାଖରେ ବି ପ୍ରବଳ ଭିଡ଼ । କେତେକ ଲୋକଙ୍କୁ ପ୍ରବଳ ପାଇଖାନା ଲାଗିବାରୁ ସେମାନେ ବ୍ୟସ୍ତ ହୋଇ ନାକ୍କେଦ କଲାପରି ଖାଲି ଏପାଖ ସେପାଖ ହେଉଥାନ୍ତି । ଭୋରୁ ଭୋରୁ ଦିନ ଦଶଟା ପର୍ଯ୍ୟନ୍ତ ଅତ୍ୟନ୍ତ ଦୟନୀୟ ଅବସ୍ଥା । ପାଣିକଳ ପାଖରେ ବି ସେହିପରି ଭିଡ଼, ତେବେ ପାଇଖାନା ପାଖପରି ଏତେ ଦୟନୀୟ ଅବସ୍ଥା ନୁହେଁ । ଏହିପରି ଦୃଶ୍ୟ ଦିନେ ଦୁଇଦିନ ଦେଖିଲା ପରେ ଭିକାରୀ ଚରଣ ସ୍ଥିର କଲେ ଯେ, କେହି ଉଠିବା ଆଗରୁ ସିଏ ଉଠି ନିଜର ନିତ୍ୟକର୍ମ ଶେଷ କରିଦେବେ ଓ ରାତି ନଅଟାରୁ ଦଶଟା ମଧ୍ୟରେ ଶୋଇ ପଡ଼ିବେ । ତାଙ୍କର ଏଇ ଅଭ୍ୟାସଟା ଶେଷ ପର୍ଯ୍ୟନ୍ତ ରହିଯାଇଥିଲା ।

ଆଇନ୍ ପରୀକ୍ଷାରେ ପାଶ୍ କରିବା ପର୍ଯ୍ୟନ୍ତ ସେ ସେହି ସ୍ଥାନରେ ରହିଥିଲେ । ସେ ସମୟରେ ପଇସା ପତ୍ରର ଯେପରି ଅଭାବ ଜିନଷ ପତ୍ରର ଦାମ୍ ମଧ୍ୟ ସେହିପରି ଶସ୍ତା । ସେତେବେଳେ କ୍ଷୀର ସେର ଦୁଇ ପଇସା । ଘିଅ ସେର ପ୍ରାୟ ଏକଟଙ୍କା । ଏଣୁ ଭିକାରୀ ଚରଣ ସକାଳ ଖାଇବା ଭାତ, ଡାଲି,ଆଳୁ ପୋଟଳ

ତରକାରୀ କରି ଖାଆନ୍ତି । ରାତିରେ ଭଲଭାବରେ ଘିଅଦେଇ ଅଟା ଗୁଡ଼ ଗୋଳାଇ ଅଟା ଚକୁଳି କରି ଖାଆନ୍ତି । ଭଲ ଘିଅ ଦିଆଯାଉଥିବାରୁ ରାତିର ପିଠାଟି ଭଲ ବାସେ । ପାଖର ସାଥୀମାନେ ବେଳେବେଳେ ସେ ପିଠାରେ ଅଂଶୀଦାର ହୁଅନ୍ତି । ଆଡ୍‌ଭୋକେଟ ଗିରୀଶ ବାବୁଙ୍କ ପୁଅ ସମୟ ସମୟରେ ପହଞ୍ଚି ସେ ପିଠାରୁ କିଛି ଖାଆନ୍ତି । ସେ ପିଠାଟିର ନାଆଁ ଦେଇଥାନ୍ତି ''ଭିକାରୀଭୋଗ'' । ପାଖସାଥୀମାନେ ବି ସବୁବେଳେ ସେଇ ନାଆଁରେ ଡାକନ୍ତି ।

## ସଫଳ ଓକିଲ ଅସଫଳ ବ୍ୟବସାୟୀ

ଭିକାରୀ ଚରଣ ୧୯୦୬ ମସିହାରେ କଟକରେ ଓକିଲାତି ଆରମ୍ଭ କଲେ । ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ନାୟକ କର୍ମବୀର ଗୌରୀଶଙ୍କରଙ୍କର ସାନଭାଇ ନାଟ୍ୟକାର ରାମଶଙ୍କରଙ୍କର ସେ ଜୁନିୟର ଭାବରେ ଓକିଲାତି କାରବାର ଆରମ୍ଭ କଲେ । ରାମଶଙ୍କର ତାଙ୍କ ଗ୍ରାମ ନିକଟବର୍ତ୍ତୀ ଦୀକ୍ଷିତ-ପଡ଼ାର ଲୋକ । ସେ ଭିକାରୀ ଚରଣଙ୍କୁ ବିଭିନ୍ନ କେଶରେ ଜୁନିୟର ଭାବରେ କାମ କରିବାର ସୁଯୋଗ ଦେଉଥିଲେ । ସେତେବେଳେ କଟକରେ ବିଶେଷ ଓଡ଼ିଆ ଓକିଲ ନଥିଲେ, ଅବଶ୍ୟ ଜାତୀୟ ଗୌରବ ମଧୁସୂଦନଙ୍କର ବେଶ୍ ପ୍ରଭାବ ଥିଲା । ମଧୁସୂଦନଙ୍କ ସହିତ ନାମଜାଦା ଓକିଲ ଭାବରେ ଗୋପବନ୍ଧୁ ଚୌଧୁରୀଙ୍କ ପିତା ଗୋକୁଳାନନ୍ଦ ଚୌଧୁରୀ ସୁନାମ ଅର୍ଜନ କରିଥିଲେ । ବଙ୍ଗବାସୀମାନଙ୍କ ମଧ୍ୟରେ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ପିତା ଜାନକୀନାଥ ବୋଷ, ନରେନ୍ଦ୍ର ସରକାର, ବିଶ୍ୱନାଥ ସିଂହଙ୍କ ନାମ ଜଣାଶୁଣା ତାଲିକାରେ ଆସୁଥିଲା ।

ଭିକରୀ ଚରଣ କିଛିଦିନ ପରେ ରାମଶଙ୍କରଙ୍କ ପାଖରୁ ଛାଡ଼ି ନିଜେ ନିଜେ ଓକିଲାତି କାରବାର କଲେ । ପରେ ଏ ସଂପର୍କରେ ଆଲୋଚନା କରାଯିବ । ଏହି ଓକିଲାତି କରିବା ସମୟରେ ସେ ନିଜର ଘରବାଡ଼ି ଆରମ୍ଭ କଲେ । ଓକିଲ ଭାବରେ ତାଙ୍କର ଯଥେଷ୍ଟ ସଫଳତା ରହିଥିଲା, ମାତ୍ର ଓକିଲାତି ବ୍ୟବସାୟର ଯେଉଁ ଅନ୍ୟ ପଥଟି ଥାଏ ସେଥିରେ ସେ ପୁରାପୁରି ଅସଫଳ ଥିଲେ । ଗରିବ ଅସହାୟ ଲୋକମାନଂକ ପାଖରୁ ପଇସା ନେଉ ନଥିଲେ, ଧନୀ ଲୋକ ପାଖରୁ ଠିକ୍ ଭାବରେ ପଇସା ଆଦାୟ କରି ପାରୁ ନଥିଲେ ।

ଏହି ଓକିଲାତି ବ୍ୟବସାୟ ସମୟରେ ତାଙ୍କର କୁଟୀର ଶିଳ୍ପ ସଂପର୍କରେ ପରୀକ୍ଷା ନିରୀକ୍ଷା ଆରମ୍ଭ ହେବାରୁ ଓକିଲାତି ବ୍ୟବସାୟରେ ମଧ୍ୟ ବାଧା ପଡିଲା ।

ଅନେକ ସମୟରେ ଭିକାରୀ ଚରଣ ମହକିଲମାନଙ୍କୁ ବୁଝାଇ ସୁଝାଇ କେଶ କରି ଖର୍ଚ୍ଚାନ୍ତ ନହେବା ପାଇଁ କୁହନ୍ତି । କେତେ ମହକିଲଙ୍କୁ ଡକାଇ କେଶ୍ ରଫା କରିବା ପାଇଁ ବୁଝାଇବା ଫଳରେ ଓକିଲାତି ବ୍ୟବସାୟରେ ମାନ୍ଦା ଅବସ୍ଥା ଆସିଲା । ଜିଦ୍‌ଖୋର ମହକିଲମାନେ ତାଙ୍କ ପାଖରୁ ଯାଇ ଅନ୍ୟ ଓକିଲ ଦେଖନ୍ତି ଓ ତାଙ୍କର ନିନ୍ଦାଗାନ କରନ୍ତି । ଏହି ସବୁ କାରଣରୁ ଓକିଲାତି ବ୍ୟବସାୟରେ ସେ ବିଶେଷ ଲାଭବାନ ହୋଇପାରୁନଥିଲେ । ଭିକାରୀ ଚରଣ ନିଜେ ଓକିଲ ହୋଇ ମଧ ଓକିଲମାନଙ୍କର ଦୋଷ ଦୁର୍ବଳତାକୁ କବିତା ମାଧ୍ୟମରେ ପ୍ରଚାର କରୁଥିଲେ । କେବଳ ଓକିଲାତି ଜ୍ଞାନରେ ଦକ୍ଷତା ଥିବାରୁ ଅନେକ ମହକିଲ ଆସୁଥିଲେ, ମାତ୍ର ତାଙ୍କର ନରମ ମନୋଭାବ, ବ୍ୟବସାୟିକ ଗୁଣ ଅଭାବରୁ କେବଳ କାମଚଳିଲା ଭଳି ଆୟରେ ସେ ସନ୍ତୁଷ୍ଟ ରହି ଭିନ୍ନ କାର୍ଯ୍ୟରେ ମନ ଦେଉଥିଲେ ।

## ଗୋଟିଏ ମନ, ଅନେକ ସପନ

ଏହି ଅଂଶରେ ଆମେ ଭିକାରୀ ଚରଣଙ୍କର ବିବିଧ କର୍ମଧାରା ସମ୍ପର୍କରେ ଆଲୋଚନା କରିବା । ଓକିଲ ହେବାପାଇଁ ପାଠ ପଢ଼ିଥିଲେ ବି ଭିକାରୀ ଚରଣ ଓକିଲାତି କାମକୁ ଗୌଣ କରି ଅନ୍ୟାନ୍ୟ ଅନେକ କାମରେ ମନୋନିବେଶ କରିଥିଲେ । ମୁଦ୍ରଣ, ପ୍ରକାଶନ, ସାହିତ୍ୟସଂଗଠନ, ଚିକିତ୍ସା ବିଦ୍ୟାଳୟ ସ୍ଥାପନ, ଗୋଶାଳା ପରିଚାଳନା, କଟକ ମ୍ୟୁନିସ୍‌ପାଲ୍‌ଟୀରେ ବିବିଧ କର୍ମ, ଓଡ଼ିଆ ଆସୋସିଏସନ, ପୋଷ୍ଟାଲ ଡିଭିଜନ ପ୍ରତିଷ୍ଠା, ଜୀବନକଲ୍ୟାଣ ସହାୟତା ସମିତି, ସହଯୋଗ ସମିତି, ଏଣ୍ଡିଚାଷ ତଥା କୁଟୀର ଶିଳ୍ପ ଇତ୍ୟାଦି ଇତ୍ୟାଦି ।

**ପ୍ରିଣ୍ଟି୍ କଂପାନୀ** ଊନବିଂଶ ଶତାବ୍ଦୀର ନାୟକ କର୍ମବୀର ଗୌରୀଶଙ୍କରଙ୍କର ଏକନିଷ୍ଠ ସାଧନା ବଳରେ ''ଉତ୍କଳ ଦୀପିକା'' ପ୍ରକାଶ ପାଇଲା । ଓଡ଼ିଆମାନଙ୍କର ସ୍ୱର ପ୍ରକାଶ ପାଇବା ପାଇଁ ଏହି ପତ୍ରିକା ଅଣ୍ଟାଭିଡ଼ି ଲାଗିପଡ଼ିଥିଲା । ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କରିବା ସଂଗେ ସଂଗେ ଓଡ଼ିଶାର ପ୍ରାଚୀନ ସାହିତ୍ୟ, ପ୍ରାଚୀନ ଗୌରବକୁ ଲୋକ ଲୋଚନକୁ ଆଣିବା ପାଇଁ ପ୍ରାଣପଣ ଉଦ୍ୟମ ଚଳାଇ ରଖିଲା । ଗୌରୀଶଙ୍କରଙ୍କର ପ୍ରିଣ୍ଟିଂ କମ୍ପାନୀ ପ୍ରତିଷ୍ଠା ଦ୍ୱାରା ଏ ସମସ୍ତ କାର୍ଯ୍ୟ ସହଜ ହୋଇପାରିଥିଲା । ଭାଷା ଓ ଜାତିର ସୁରକ୍ଷା ପାଇଁ ଅଣ୍ଟା ଭିଡ଼ିଥିବା ଗୌରୀଶଙ୍କର ଲାଭାଲାଭକୁ ଅପେକ୍ଷା ନ କରି ଜାତୀୟ କାର୍ଯ୍ୟ କରି ଚାଲିଥାନ୍ତି । ପ୍ରିଣ୍ଟିଂ କମ୍ପାନୀ ପ୍ରାଚୀନ କାବ୍ୟ, ମହାଭାରତ, ରାମାୟଣାଦି ପୁରାଣ, ଧର୍ମଶାସ୍ତ୍ର, ଓଡ଼ିଆ ପାଞ୍ଜି ପ୍ରକାଶ କରିଥିଲେ । ଗୌରୀଶଙ୍କରଙ୍କ ନେତୃତ୍ୱରେ ଏହି

ଅନୁଷ୍ଠାନ ସୁଶୃଙ୍ଖଳ ଭାବରେ ଚାଲିଥିଲା । ସେ ଅଂଶୀଦାରମାନଙ୍କୁ ୫୫ ହଜାର ଟଙ୍କା ଲାଭ ଦେଇ ୪୦ ହଜାର ଟଙ୍କାର ସଂପତ୍ତି ଅର୍ଜନ କରିଥିଲେ । ଏଗାର ହଜାର ଟଙ୍କା ବ୍ୟୟରେ ସେ କଟକର ଟାଉନ୍ ହଲ ନିର୍ମାଣ କରାଇଥିଲେ । ଚଉଦ ହଜାର ଟଙ୍କା ବ୍ୟୟରେ କଟକ କାଠଗଡ଼ା ସାହିର କାୟସ୍ଥ ଛାତ୍ରାବାସ ନିର୍ମାଣ କରାଇଥିଲେ । ବୟସାଧିକ୍ୟ ହେତୁ ୧୯୧୫ ମସିହାରେ ସେ ଉତ୍କଳ ଦୀପିକାରୁ ଅବସର ନେଲେ ଓ ୧୯୧୭ ମାର୍ଚ୍ଚ ମାସରେ ତାଙ୍କର ଦେହାନ୍ତ ହେଲା । ଗୌରୀଶଙ୍କରଙ୍କ ପରେ ବି ଏହି ପତ୍ରିକା ଓ ପ୍ରେସ ଚାଲିଥିଲା ମାତ୍ର ଗୌରୀଶଙ୍କରଙ୍କ ପରିଚାଳନାଗତ ଦକ୍ଷତା ଭଳି ବ୍ୟବସ୍ଥା ହୋଇ ନ ପାରିବାରୁ ଏଥିରେ କ୍ଷତି ହେବାକୁ ଲାଗିଲା ।

ଏ ପତ୍ରିକା ଓ ପ୍ରେସ୍ କାର୍ଯ୍ୟରେ ସହାୟତା ପାଇଁ ଆଉ କେତେକ କର୍ମୀ ଅଣ୍ଟାଭିଡ଼ି ଲାଗିପଡ଼ିଲେ । ଗଡ଼ଜାତ ମାହଲର ଅବସର ପ୍ରାପ୍ତ ସୁପରିନ୍‌ଟେଣ୍ଡେଣ୍ଟ ଶ୍ରୀ ସୁଦାମ ଚରଣ ନାୟକ, ଭିକାରୀ ଚରଣ ପଟ୍ଟନାୟକ, ମଦନମୋହନ ପଟ୍ଟନାୟକ ଓ କଳ୍ପତରୁ ଦାସ । କିଛିଦିନ ପରେ ସୁଦାମ ବାବୁ ଏ ମିଳିତ କାର୍ଯ୍ୟରୁ ବିଦାୟ ନେବା ପରେ ଭିକାରୀ ଚରଣ, ମଦନମୋହନ ଓ କଳ୍ପତରୁ ଏହାର ପରିଚାଳନା କରିବାକୁ ଲାଗିଲେ । ଭିକାରୀ ଚରଣ କିଛିଦିନ ଏହି ପ୍ରେସ୍‌ର ମ୍ୟାନେଜର ଭାବରେ କାର୍ଯ୍ୟ କରିଥିଲେ । କର୍ମକର୍ତ୍ତାମାନଙ୍କ ବ୍ୟବସାୟିକ ଜ୍ଞାନ ଅଭାବରୁ ଓ କେତେକ ଅସାଧୁ କର୍ମଚାରୀଙ୍କ ଯୋଗୁ ପ୍ରିଣ୍ଟିଂ କମ୍ପାନୀର ଅବସ୍ଥା ଖରାପ ଆଡ଼କୁ ଗତିକଲା ।

ଉତ୍କଳ ସାହିତ୍ୟ ସମାଜ ଭକ୍ତକବି ମଧୁସୂଦନ କଟକ ଟ୍ରେନିଂ ସ୍କୁଲରେ "ଆଲୋଚନା ସଭା" ନାମରେ ଏକ ସାହିତ୍ୟ ଅନୁଷ୍ଠାନ ଆରମ୍ଭ କରିଥିଲେ । ବର୍ତ୍ତମାନର ଉତ୍କଳ ସାହିତ୍ୟ ସମାଜ ସେହି ସଂସ୍ଥାର ପରବର୍ତ୍ତୀ ରୂପ । ଭକ୍ତକବିଙ୍କ ପ୍ରତିଷ୍ଠିତ "ଉତ୍କଳ ସାହିତ୍ୟ ସମାଜ"ର ସଭ୍ୟସଂଖ୍ୟା କ୍ରମଶଃ ବୃଦ୍ଧି ପାଇବାରୁ ଅନୁଷ୍ଠାନ ପାଇଁ ଘରଟିଏ ଆବଶ୍ୟକ ହେଲା । ସାହିତ୍ୟ ସମାଜର ସଭ୍ୟମାନଙ୍କ ଉଦ୍ୟମରେ କଟକ ମ୍ୟୁନିସିପାଲିଟି ଠାରୁ ସ୍ଥାନଟିଏ ମିଳିଲା ମାତ୍ର ଗୃହ ନିର୍ମାଣ ନିମନ୍ତେ ଅର୍ଥର ଅଭାବ ଦେଖାଦେଲା । ସାହିତ୍ୟ ସମାଜର ବରିଷ୍ଠ ସଦସ୍ୟ ଶଶିଭୂଷଣ ରାୟ ଆଳିର ରାଜା ବ୍ରଜସୁନ୍ଦରଙ୍କ ଠାରୁ ତିନିହଜାର ଟଙ୍କା ଦାନ ଆଣିବାରୁ ମୂଳଦୁଆ କାମଟି ହୋଇ ପାରିଲା । ଏହି ସମୟରେ କଟକରେ ରାଜା ମହାରାଜାଙ୍କର ଏକ ସମାରୋହ ହେଉଥିଲା । ଏହି ଉତ୍ସବକୁ ମୟୂରଭଞ୍ଜର ମହାରାଜ ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେବ ଆସିଥିଲେ । ଉତ୍କଳ ସାହିତ୍ୟ ସମାଜର ସଦସ୍ୟମାନଙ୍କର ଏକ ବୈଠକ ବସି ସ୍ଥିର ହେଲା ଯେ, ସାହିତ୍ୟ ସମାଜ ଗୃହ ନିର୍ମାଣ ନିମନ୍ତେ ମହାରାଜା ପୂର୍ଣ୍ଣଚନ୍ଦ୍ରଙ୍କୁ ସାକ୍ଷାତ କରାଯାଇ ସାହାଯ୍ୟ ପାଇଁ ଅନୁରୋଧ କରାଯିବ । ଭିକାରୀ

ଚରଣ ଓ ଦାମୋଦର କରଙ୍କର ପୂର୍ଣ୍ଣଚନ୍ଦ୍ରଙ୍କ ସହିତ ପିଲାଦିନୁ ଭଲ ପରିଚୟ ଥିଲା । ସାହିତ୍ୟ ସମାଜ ତରଫରୁ ସେ ଦୁଇଜଣ ଯାଇ ମହାରାଜାଙ୍କ ସହିତ ଏ ସଂପର୍କରେ ଆଲୋଚନା କଲେ ।

ମହାରାଜା ପୂର୍ଣ୍ଣଚନ୍ଦ୍ର ସମସ୍ତ କଥା ଶୁଣି ଶେଷରେ କହିଲେ ଯେ ଯଦି ଘରଟି ତାଙ୍କ ପିତା ସ୍ୱର୍ଗତ ଶ୍ରୀରାମଚନ୍ଦ୍ରଙ୍କ ନାମରେ ହେବ, ତେବେ ସେ ଘରର ସମସ୍ତ ଖର୍ଚ୍ଚ ବହନ କରିବେ । ଏମାନେ ସାହିତ୍ୟ ସମାଜକୁ ଆସି ବିଧିବଦ୍ଧ ପ୍ରସ୍ତାବ ଆଗତ କରାଇ ମହାରାଜାଙ୍କୁ ଜଣାଇବା ପାଇଁ ଶ୍ରୀ ବିଶ୍ୱନାଥ କର ଓ ଭିକାରୀ ଚରଣ ପଟ୍ଟନାୟକ ବାରିପଦା ଗଲେ । ମହାରାଜାଙ୍କ ଠାରୁ ଅନୁମତି ଆଣିବା ପରେ ଘର ତିଆରି କାମ ଆରମ୍ଭ ହେଲା । ଏହି ଘର ତିଆରି କାମରେ ଶ୍ରୀ ଶଶିଭୂଷଣ ରାୟ, ଭିକାରୀ ଚରଣ ପଟ୍ଟନାୟକ ଓ ଚିନ୍ତାମଣି ଆଚାର୍ଯ୍ୟ ତତ୍ତ୍ୱାବଧାନ କରୁଥିଲେ । ଘର ତିଆରି ଶେଷ ହେବା ପରେ ୧୯୨୯ ମସିହାରେ ମହାରାଜା ପୂର୍ଣ୍ଣଚନ୍ଦ୍ର ଆସି ଏହାକୁ ଉଦ୍‌ଘାଟନ କରିଥିଲେ । ଦୁର୍ଭାଗ୍ୟର ବିଷୟ ଏହି ଉଦ୍‌ଘାଟନର କିଛିଦିନ ପରେ ମହାରାଜାଙ୍କର ପରଲୋକ ହୋଇଗଲା ।

ଭିକାରୀ ଚରଣ ଉତ୍କଳ ସାହିତ୍ୟ ସମାଜ ସହିତ ଘନିଷ୍ଠ ଭାବରେ ଜଡ଼ିତ ଥିଲେ । ଅନେକ ସମୟରେ ସେ ଏହାର କର୍ମକର୍ତ୍ତା ଭାବରେ କାର୍ଯ୍ୟ କରିଥିଲେ । ଭିକାରୀ ଚରଣଙ୍କ ଘର ସମ୍ମୁଖରେ ଉତ୍କଳ ସାହିତ୍ୟ ସମାଜ ଓ ତା' ପାଖରେ ଟାଉନ ହଲ ଥିବାରୁ ଏହି ଦୁଇଟି ସଂସ୍ଥାର ବିଭିନ୍ନ କାର୍ଯ୍ୟକ୍ରମରେ ଭିକାରୀ ଚରଣଙ୍କ ସହାୟତା ଲୋଡ଼ା ଯାଉଥିଲା ।

**ଆୟୁର୍ବେଦ ବିଦ୍ୟାଳୟ-** ଆଡ୍‌ଭୋକେଟ୍ କଳ୍ପତରୁ ଦାସଙ୍କର କବିରାଜୀ ଚିକିତ୍ସା ପ୍ରତି ଯଥେଷ୍ଟ ବିଶ୍ୱାସ ଥିଲା । ସେ ମ୍ୟୁନିସ୍‌ପାଲିଟିର ଚେୟାରମ୍ୟାନ ଥିଲାବେଳେ ଭିକାରୀ ଚରଣଙ୍କ ଘର ପାଖରେ ଖଣ୍ଡିଏ ଜାଗାନେଇ ଗୋଟିଏ ଆୟୁର୍ବେଦ ବିଦ୍ୟାଳୟ ସ୍ଥାପନ କଲେ । କଳ୍ପତରୁ ଦାସଙ୍କ ପରଲୋକ ଗମନ ପରେ ତାଙ୍କ ସ୍ମୃତିରକ୍ଷା ପାଇଁ ଆୟୁର୍ବେଦ ବିଦ୍ୟାଳୟର ସ୍ଥାୟୀ ଘର ନିର୍ମାଣ କରାଇ ଶିକ୍ଷା ଓ ଚିକିତ୍ସାର ବ୍ୟବସ୍ଥା କରାଇଲେ । ଏହି ଆୟୁର୍ବେଦ ବିଦ୍ୟାଳୟର ସେକ୍ରେଟାରୀ ଥିବା ସମୟରେ ସେ ଏହାକୁ ସରକାରଙ୍କର ସ୍ୱୀକୃତି ପ୍ରଦାନ କରାଇଥିଲେ ।

ଗୋଶାଳା- ସେ ସମୟରେ ବୟୋବୃଦ୍ଧ ଓକିଲ ହରିଚରଣ ବନ୍ଦୋପାଧ୍ୟାୟ ଗୋଶାଳାର ସଭାପତି ଥିଲେ । ଭିକାରୀ ଚରଣ ନୂଆ ଓକିଲାତି ଆରମ୍ଭ କରିଥାନ୍ତି, ଗୋଶାଳା ସମିତି ତରଫରୁ ତାଙ୍କୁ ସଂପାଦକ ହେବାପାଇଁ ଅନୁରୋଧ କରାଗଲା ।

ସାଧାରଣ କେତୋଟି ଚିଠିପତ୍ର ଲେଖାଲେଖି କରିବା ବ୍ୟତୀତ ଆଉ କିଛି କାମ ନଥିବାରୁ ଥରେ ଭିକାରୀ ଚରଣ ସକାଳୁଆ କଚେରୀ ସାରି ସାଇକେଲରେ ଦୁଇଟାବେଳେ ପହଁଚି ଦେଖିଲେ ଗୋରୁମାନଙ୍କ କୁଣ୍ଡରେ ପାଣି ନାହିଁ, ଠିକ୍ ଭାବରେ ଖାଇବାକୁ ଦିଆଯାଇନାହିଁ । ଗୋରୁଗୋଠ ଭଲ ସଫା ହୋଇନି । ଏସବୁ ଦେଖି ସେ ସବୁର ବନ୍ଦୋବସ୍ତ ପାଇଁ ନିଯୁକ୍ତ ଲୋକମାନଙ୍କୁ ବରାଦ ଦେଲେ । କିଛିଦିନ କାମ ତଦାରଖ କରିବାରୁ ସବୁକାମ ଭଲ ଭାବରେ ଚାଲିଲା । କର୍ମଚାରୀମାନଙ୍କ ମଧ୍ୟରେ ଆଗ୍ରହ ବଢ଼ାଇବା ପାଇଁ ବେତନ ବୃଦ୍ଧି ଓ ବିଭିନ୍ନ କାର୍ଯ୍ୟରେ ଦକ୍ଷତା ଦେଖାଉଥିବା କର୍ମଚାରୀମାନଙ୍କୁ ପୁରସ୍କାର ପ୍ରଦାନର ବ୍ୟବସ୍ଥା କଲେ । ବାରିପଦାରେ ଗୋସେବା କରିବାର ଯେଉଁ ସାମାନ୍ୟ ପ୍ରେରଣା ପାଇଥିଲେ, ଏଠାରେ ତାକୁ କାମରେ ଲଗାଇଲେ । ଗୋଶାଳାରେ କାମ କରୁଥିବା କର୍ମଚାରୀମାନେ କେବଳ ବେତନ ପାଇଁ କାମ କରୁଥିବାର ସେ ଅନୁଭବ କଲେ । ଭିକାରୀ ଚରଣ ଦେଖିଲେ ଯେ କର୍ମଚାରୀ ଓ ସର୍ବସାଧାରଣଙ୍କ ମଧରେ ଗୋସେବା ପାଇଁ ଅନୁପ୍ରେରଣା ଜାତ ହେବା ଉଚିତ୍ । ଏହିକଥା ଲକ୍ଷ୍ୟକରି ଭିକାରୀ ଚରଣ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ଆରମ୍ଭ କଲେ ଏବଂ ଏହି ବିଦ୍ୟାଳୟର ଶିକ୍ଷକ ଓ ଛାତ୍ରମାନଙ୍କୁ ଗୋସେବା ସଂପର୍କରେ ଅନୁପ୍ରାଣିତ କରିବାକୁ ଚେଷ୍ଟାକଲେ । କ୍ରମେ କ୍ରମେ ପିଲାମାନେ ଗୋସେବା ସହିତ କୁଟୀରଶିଳ୍ପ ବିଷୟରେ ପ୍ରାଥମିକ ତାଲିମ ପାଇଲେ । ସେ ଗୋସେବା ସଂପର୍କରେ କବିତା ଲେଖି ଶୁଣାଇବାକୁ ଲାଗିଲେ ।

ଗୋସେବା ଓ କୁଟୀର ଶିଳ୍ପ ସଂପର୍କରେ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ଓ ଛାତ୍ରମାନଙ୍କ ପାଖରେ ଭିକାରୀ ଚରଣଙ୍କ ଯୋଜନା ବେଶ୍ ଉପଯୋଗୀ ହୋଇପାରିଲା । ଗୋଶାଳା ପ୍ରତି ବାହାର ଲୋକଙ୍କର ଧାରଣା ବି ବଦଳି ଗଲା । ଭିକାରୀ ଚରଣଙ୍କ ଅନୁରୋଧରେ ସେତେବେଳର ବିହାର ଓଡ଼ିଶାର ଇଣ୍ଡଷ୍ଟ୍ରି ବୋର୍ଡର ଚେୟାରମ୍ୟାନ କଟକରେ ତାଙ୍କର ବୈଠକ ବସାଇଲେ, ଏହି କମିଟିରେ ଭିକାରୀ ଚରଣ ଓ ସେ ସମୟର ଡି.ପି.ଆଇ. ବି ଜଣେ ଜଣେ ମେମ୍ବର ଥିଲେ । ଏକଶହ ପ୍ରାଥମିକ ସ୍କୁଲର ଶିକ୍ଷକ ଓ ଛାତ୍ରମାନେ ଏହି ସମ୍ମେଳନରେ ଉପସ୍ଥିତ ଥିଲେ । ଭିକାରୀ ଚରଣଙ୍କ ପ୍ରତିଷ୍ଠିତ ଗୋଶାଳା ସ୍କୁଲର ଛାତ୍ର-ଶିକ୍ଷକ ମାନଙ୍କର କାର୍ଯ୍ୟାବଳୀ ଅନ୍ୟ ସମସ୍ତଙ୍କ ପାଇଁ ଆଦର୍ଶ ହୋଇଥିଲା ।

ଭିକାରୀ ଚରଣଙ୍କ କର୍ମଧାରା ସଂପର୍କରେ ବିଶେଷ ଭାବରେ ଅବଗତ ହେବା ପରେ ତତ୍କାଳୀନ ଡି.ପି.ଆଇ. ଭିକାରୀ ଚରଣଙ୍କୁ ପାଟନାରେ ଅନୁଷ୍ଠିତ ଗୋଟିଏ

ଏଜୁକେଶନ କନ୍‌ଫରେନ୍‌ସକୁ ନିମନ୍ତ୍ରଣ କରିଥିଲେ । ସେଠାରେ ପ୍ରାଥମିକ ସ୍କୁଲ ସମୂହର ପାଠ୍ୟ ଖସଡା ପ୍ରସ୍ତୁତିର ଭାର ତାଙ୍କୁ ଅର୍ପଣ କରାଯାଇଥିଲା । ଭିକାରୀ ଚରଣଙ୍କ ପ୍ରସ୍ତାବ ଅନୁସାରେ ପ୍ରାଥମିକ ସ୍କୁଲରେ ହସ୍ତକର୍ମ, କୁଟୀର ଶିଳ୍ପକୁ ପାଠ୍ୟକ୍ରମ ଅନ୍ତର୍ଭୁକ୍ତ କରାଯାଇଥିଲା । ଭିକାରୀ ଚରଣ ଏ ସଂପର୍କରେ ପୁସ୍ତକ ରଚନା କରିଥିଲେ । ପରୀକ୍ଷା ମୂଳକ ଭାବରେ କଟକ ଜିଲ୍ଲାର ସମସ୍ତ ସ୍କୁଲରେ ଏହି ପଦ୍ଧତି ଲାଗୁ ହୋଇ ବେଶ ସଫଳତା ଲାଭ କଲା । ତାପରେ ଗଡ଼ଜାତର ରାଜାମାନେ ଅତି ଆଗ୍ରହର ସହିତ ଏହି ପଦ୍ଧତିକୁ ଗ୍ରହଣ କରି ନେଇଥିଲେ । ଏହି କାର୍ଯ୍ୟ ପାଇଁ ମୟୂରଭଞ୍ଜ ଷ୍ଟେଟ ଭିକାରି ଚରଣଙ୍କୁ ୧୯୩୪ ସାଲରେ କୁଟୀର ଶିଳ୍ପ ଓ ପ୍ରାଇମେରୀ ଶିକ୍ଷାର ଉପଦେଷ୍ଟା ଭାବରେ ନିଯୁକ୍ତି ଦେଇଥିଲେ । ତା ପରେ ପରେ ଅନ୍ୟାନ୍ୟ ଗଡ଼ଜାତ, ଯଥା : ଆଠମଲ୍ଲିକ, ବଉଦ, ବଣେଇ, ସୋନପୁର, ପାଟଣା, କଳାହାଣ୍ଡି ଆଦି ରାଜ୍ୟରେ ଭିକାରୀ ଚରଣ ପ୍ରାଥମିକ ଶିକ୍ଷା ଓ କୁଟୀର ଶିଳ୍ପର ଉନ୍ନତି ପାଇଁ ସେଠାକୁ ସାମୟିକ ଭାବରେ ଯାଇ ପରାମର୍ଶ ଦେଇ ଆସୁଥିଲେ ।

ସେ ଶିକ୍ଷକମାନଙ୍କୁ ନିଜେ ତାଲିମ୍ ଦେଇ ପିଲାମାନଙ୍କୁ ଶିକ୍ଷା ଦେବା ପାଇଁ ପ୍ରେରଣ କରୁଥିଲେ । ପିଲାମାନେ ସେହି ଜିନିଷକୁ ଘରେ ଅଭ୍ୟାସ କରୁଥିଲେ । ଭଲ ଜିନିଷ ପାଇଁ ପୁରସ୍କାରର ବ୍ୟବସ୍ଥା ଥିଲା । ପରୋକ୍ଷଭାବରେ ଛାତ୍ରଛାତ୍ରୀମାନଙ୍କ ଘରେ ଏହି ତାଲିମ କାର୍ଯ୍ୟକ୍ରମ ଚାଲୁ ରହୁଥିଲା । ସେ ଉତ୍କୃଷ୍ଟ ଜିନିଷକୁ ସେହି ଅନୁପାତରେ ମୂଲ୍ୟଦେଇ କିଣି ନେଇଯାଉଥିଲେ । ସରକାରୀ ପ୍ରୋତ୍ସାହନ ପାଇ ଏ ଧାରା କ୍ରମେ କ୍ରମେ ଆଗେଇ ଚାଲିଲା ।

କଟକ ମ୍ୟୁନିସ୍‌ପାଲିଟିରେ ଭିକାରୀ ଚରଣ ନିଜେ ସିଧାସଳଖ କ୍ଷମତାରେ ରହି କାର୍ଯ୍ୟ କରିବା ଅପେକ୍ଷା ବାହାରେ ପରାମର୍ଶଦାତା ବା ସାଧାରଣ ସଭ୍ୟ ଅଥବା କାର୍ଯ୍ୟକାରୀ ସମିତିର ସଭ୍ୟ ଭାବରେ ଆନୁଷ୍ଠାନିକ ଉନ୍ନତି ପାଇଁ ସର୍ବଦା ତତ୍ପର ଥିଲେ । ଅନେକ ସମୟରେ ନେତା, ନେତୃତ୍ୱ ଓ ନୈତିକତା ସଂପର୍କରେ ତାଙ୍କର ଅଭିମତ ହିଁ ତାଙ୍କୁ କ୍ଷମତାରେ ରହିବା ଠାରୁ ଦୂରେଇ ରଖୁଥିଲା । କଟକ ମ୍ୟୁନିସ୍‌ପାଲିଟିର ଉନ୍ନତି ପାଇଁ ସେ ଅନେକ କାମ କରିଥିଲେ ମଧ ସର୍ବୋଚ୍ଚ କ୍ଷମତାରେ ରହିବାକୁ ଚାହୁଁ ନଥିଲେ । ବର୍ତ୍ତମାନ ପରି ସେତେବେଳେ ସାବାଳକ ଭୋଟପ୍ରଥା ନଥିଲା । କେବଳ ଟିକସ୍‌ଦାତାମାନେ ହିଁ ଭୋଟ ଦେଉଥିଲେ । ଭୋଟଦାତାମାନଙ୍କୁ ସଚେତନ କରାଇବା ପାଇଁ ଭିକାରୀ ଚରଣ ଗୋଟିଏ ହାତଟଣା ରିକ୍‌ସାରେ ବସି ଲୋକମାନଙ୍କୁ ଯାଇ ସଚେତନ କରାଉଥିଲେ । ଭୋଟଗ୍ରହୀତାମାନେ

କିପରି ପରବର୍ତ୍ତୀ ସମୟରେ ଭୋଟଦାତାମାନଙ୍କୁ ପ୍ରତାରଣା କରନ୍ତି ସେ ବିଷୟରେ ତାଙ୍କର 'ଭୋଟ', 'ଭୋଟ ଭିକାରି' ଓ 'ଭୋଟ ସୁମାରି' ବହିରେ ଉଲ୍ଲେଖ କରିଛନ୍ତି । ସେତେବେଳେ ଭିକାରୀ ଚରଣ ବ୍ୟଙ୍ଗ କବିତା ଲେଖି ଯେଉଁସବୁ ଦୋଷ ତ୍ରୁଟି ଦେଖାଉଥିଲେ ବର୍ତ୍ତମାନ ବି ସେଥିରେ ପରିବର୍ତ୍ତନ ହେଲାଭଳି ଦେଖାଯାଉନି । ସେ ସମୟର କଟକ ସହରର ବିଶିଷ୍ଟ ବ୍ୟକ୍ତିମାନେ ଅନେକ କଥାରେ ଭିକାରୀ ଚରଣଙ୍କ ପରାମର୍ଶ ପାଇଁ ତାଙ୍କ ଘରକୁ ଆସୁଥିଲେ ।

ମ୍ୟୁନିସ୍‌ପାଲିଟି କିଂବା ବିଧାନ ପରିଷଦକୁ ନିର୍ବାଚିତ ହେବାପାଇଁ ସେ ପ୍ରାର୍ଥୀ ହେଉ ନଥିଲେ, ବରଂ ଯେଉଁମାନେ ପ୍ରାର୍ଥୀ ହେଉଥିଲେ ସେମାନେ ଭିକାରୀ ଚରଣଙ୍କ ଠାରୁ ସାହାଯ୍ୟ ନେଉଥିଲେ । ସେ ନିଜେ କ୍ଷମତାରେ ନରହି କିଂ ମେକର ହେବାପାଇଁ ବେଶି ପସନ୍ଦ କରୁଥିଲେ । ନିର୍ବାଚିତ ପ୍ରାର୍ଥୀଙ୍କ ସାହାଯ୍ୟରେ ଜନମଙ୍ଗଳ କାର୍ଯ୍ୟ କରାଉଥିଲେ ।

ଭିକାରୀ ବାବୁଙ୍କ ଭୋଜି- ଭିକାରୀ ଚରଣଙ୍କ ଲେଖାରେ ଯେପରି କୌତୁକ ରହିଥାଏ, ତାଙ୍କର କାର୍ଯ୍ୟକ୍ରମ ଓ ଜୀବନଧାରାରେ ସେହିପରି ବିଚିତ୍ର ଘଟଣା ସବୁ ପରିଲକ୍ଷିତ ହୁଏ । ସହରର ସାଧାରଣ ଦିନ ମଜୁରିଆ ଠାରୁ ସରକାରୀ ଅଫିସର ଓ ସହରର ମାନ୍ୟଗଣ୍ୟ ବ୍ୟକ୍ତିମାନେ ଭିକାରୀ ଚରଣଙ୍କ ସହିତ ସଂପର୍କ ରକ୍ଷା କରୁଥିଲେ । ବ୍ୟକ୍ତିଗତ ଜୀବନରେ ନିଜଦ୍ୱାରା ପ୍ରସ୍ତୁତ କରାଯାଇଥିବା ରୋଷେଇ ଯନ୍ତ୍ରରେ ତାଙ୍କର ରୋଷେଇ ହେଉଥିଲା । ବାଲି ଚୁଲି, ମାଟିରେ ତିଆରି ନାନା କିସମର ରୋଷେଇ ସରଞ୍ଜାମ ଉଲ୍ଲେଖଯୋଗ୍ୟ । ଥରେ ଭିକାରୀ ଚରଣ ସହରର ସମସ୍ତ ଠେଲାବାଲା, ରିକ୍‌ସାବାଲା, ଶଗଡ଼ିଆ ଓ ଭିକାରିମାନଙ୍କୁ ଏକ ଭୋଜିରେ ଯୋଗଦାନ ପାଇଁ ନିମନ୍ତ୍ରଣ ଜଣାଇଲେ । ଏହା ସଙ୍ଗେ ସଙ୍ଗେ ସହରର ମାନ୍ୟଗଣ ବ୍ୟକ୍ତି ସରକାରୀ ଅଫିସର, ମ୍ୟୁନିସ୍‌ପାଲିଟିର କର୍ମକର୍ତ୍ତା ଓ ବିଶିଷ୍ଟ ଓକିଲ ବନ୍ଧୁଙ୍କୁ ଭୋଜିରେ ଯୋଗଦାନ ପାଇଁ ନିମନ୍ତ୍ରଣ କରାଗଲା । ନିଜେ ଭିକାରୀ ଚରଣ ଭୋଜି ପ୍ରସ୍ତୁତିର ତଦାରଖ କରୁଥାନ୍ତି । ଟାଉନ୍‌ହଲ ରୋଡ଼୍‌ରେ ସାଧାରଣ ଲୋକଙ୍କ ପାଇଁ ଖିଆପିଆର ବନ୍ଦୋବସ୍ତ ହୋଇଥାଏ । ଦେଶି ଘିଅରେ ପ୍ରସ୍ତୁତ ଉନ୍ନତ ମାନର ପଲାଉ ସହିତ ହରଡ଼ ଡାଲି, ନାନା ବ୍ୟଞ୍ଜନ, ଖଣ୍ଡ ଖଣ୍ଡ ରୋହି ମାଛର ଭୂରି ଭୋଜନରେ ଭିକାରି ଓ ଶ୍ରମିକ ଶ୍ରେଣୀର ଲୋକମାନେ ତୃପ୍ତ ହୋଇ ଭୋଜନ କରି ଫେରିଗଲା ପରେ ସନ୍ଧ୍ୟା ସମୟରେ ସରକାରୀ ଅଫିସର ଓ ନାନା ମାନ୍ୟବ୍ୟକ୍ତିଙ୍କର ଭୋଜନ ଆରମ୍ଭ ହେଲା । ଭଦ୍ରଲୋକମାନେ ଭୋଜିରେ ବସି ଖାଇଲାବେଳେ ପରସ୍ପର ମୁହଁକୁ

ଚାହିଁଥାନ୍ତି, ମାତ୍ର ଘଟଣାର କାରଣ ସଂପର୍କରେ କେହି ପଚାରିପାରୁ ନଥାନ୍ତି । ଭିକାରୀ ବାବୁ ସେମାନଙ୍କୁ ପରିହାସ କରୁନାହାନ୍ତି ତ ? ବଗଡ଼ା ନାଲି ଚାଉଳର ଉଷୁନା ଭାତ, ଦେଶୀ ମୁଗ ଡାଲି, ପାଣି କଖାରୁ ରାଇ, ବାଗମିଶା ଶାଗର ଏକ ପ୍ରସ୍ତୁତି ଭଳି ସଂପୂର୍ଣ୍ଣ ସାଧାରଣ ଘରର ଖାଦ୍ୟ । ତାଳପତ୍ର ଚଟ ଉପରେ ବସି କଦଳୀ ପତ୍ରରେ ବଢ଼ା ହୋଇଥିବା ଖାଦ୍ୟ ପରିବେଷଣ ବେଳେ ଭିକାରୀ ଚରଣ ପ୍ରତି ଲୋକ ପାଖରେ ପହଞ୍ଚି ଜିନିଷ ପତ୍ର ଦିଆନିଆର ତଦାରଖ କରୁଥାନ୍ତି । ଖାଦ୍ୟର ରୂପ ଆଖିକୁ ଭଲ ଦିଶୁ ନଥାଏ ମାତ୍ର ଖାଇଲେ ପାଟିକୁ ତ ଖରାପ ଲାଗୁନି ? ଖାଦ୍ୟ ସହିତ ନାନା ପ୍ରକାର ଆଚାର ମୁରବା ବି ଉପଭୋଗ୍ୟ ହେଉଛି । ଲୋକମାନଙ୍କର ଖିଆପିଆ ଶେଷ ହେଲାପରେ ଜଣେ ଓକିଲ ବନ୍ଧୁ ପଚାରିଦେଲେ 'ଆଚ୍ଛା, ଏ ପ୍ରକାର ଭୋଜିର କୌଣସି କାରଣ ଅଛି କି ? ଭିକାରୀ ଚରଣ ହସି ହସ କହିଲେ 'ଆପଣମାନଙ୍କର ଭୋଜନ ଅରୁଚିକର ହୋଇଥିଲା କି ?' ସାଙ୍ଗେ ସାଙ୍ଗେ କେତେକ ଭଦ୍ରଲୋକ କହିଲେ - 'ନା ନା, ଆମ୍ଭେମାନେ ଠିକ୍ ଭାବରେ ଭୋଜନ କରିଛୁ । କିନ୍ତୁ....'। ଭିକାରୀ ଚରଣ କଥା ଛଡ଼ାଇ ନେଇ କହିଲେ 'ମୋର ବି ଲକ୍ଷ୍ୟ ସେଇଆ । ଆପଣମାନେ ପ୍ରତିଦିନ ଯାହା ଖାଉଛନ୍ତି ତାର ବ୍ୟତିକ୍ରମ ହିଁ ଭୋଜି । ଆପଣମାନେ ସାଧାରଣ ଭାବରେ ଏ ପ୍ରକାର ଖାଦ୍ୟ ସହିତ ପରିଚିତ ନୁହନ୍ତି, କିନ୍ତୁ ଆମ ଦେଶର ଦରିଦ୍ର ମୂଲିଆ ଖଟିଖିଆଙ୍କ ଘରର ଏହା ଦୈନନ୍ଦିନ ଖାଦ୍ୟ । ସେମାନେ ଘରେ କିଂବା ସାଧାରଣ ଭୋଜିରେ ଯେଉଁପ୍ରକାର ଖାଦ୍ୟ ପାଆନ୍ତିନି, ତାଙ୍କୁ ଆଜି ଦିନବେଳା ସେଇଖାଦ୍ୟ ପରିବେଷଣ କରାଯାଇଛି ।' ଏହି କଥା ପରେ ସମସ୍ତେ ହୋ ହୋ ହୋଇ ହସି ଉଠିଲେ । ତା ପର ଦିନ ସହର ସାରା ଭୋଜି ବିଷୟରେ ଚର୍ଚ୍ଚା । ବଡ଼ଲୋକଙ୍କ କଥା ତ ଏତେ ବାହାରକୁ ଆସିଲା ନାହିଁ, ସାଧାରଣ ଲୋକମାନେ ଭିକାରୀ ବାବୁଙ୍କର ପ୍ରଶଂସା କରିବାକୁ ଲାଗିଲେ ।

**ଓଡ଼ିଶା ଆସୋସିଏସନ ଓ ଓଡ଼ିଆ ଆସୋସିଏସନ**– ଭିକାରୀ ଚରଣଙ୍କର ଓକିଲାତି ଜୀବନର ଆଦିପର୍ଯ୍ୟାୟର ଘଟଣା । ସେ ସମୟରେ କଟକରେ ଓଡ଼ିଆମାନଙ୍କର ପ୍ରଭାବ ବିଶେଷ ନଥାଏ । ମଧୁବାବୁଙ୍କ ପରେ ପରେ ମାତ୍ର ୧୦/୧୨ ଜଣ ଓଡ଼ିଆ ଓକିଲ ପ୍ରାୟ ସମସ୍ତ କାର୍ଯ୍ୟରେ ଭାଗ ନେଉଥାନ୍ତି । ଏମାନଙ୍କ ସଙ୍ଗରେ ୮/୧୦ ଜଣ ଓଡ଼ିଶାରେ ବସବାସ କରୁଥିବା ବଙ୍ଗାଳୀ ଓକିଲ ଓ ଆଉ ସମସ୍ତେ ଓଡ଼ିଶା ବାହାରର ବ୍ୟକ୍ତି । ଇଂରେଜ ସରକାର ଅନେକ ସମୟରେ ଭାରତୀୟ ବୁଦ୍ଧିଜୀବୀମାନଙ୍କ ସହାୟତାରେ ସ୍ଥାନୀୟ ସମସ୍ୟାର ସମାଧାନ କରୁଥିଲେ ଓ ସ୍ଥାନୀୟ ପ୍ରଶାସନ ଚଳାଉଥିଲେ । ବିଭିନ୍ନ ଅଞ୍ଚଳରେ ଆଞ୍ଚଳିକ ସଭାମାନ ଗଠନ

କରାଯାଇ ଲୋକମାନଙ୍କ ତରଫରୁ ଇଂରେଜ ସରକାରଙ୍କୁ ବିଭିନ୍ନ ପରାମର୍ଶ ତଥା ଦାବିପତ୍ର ଦିଆଯାଇଥାଏ ।

କଟକରେ ଥିବା 'ଓଡ଼ିଶା ପିପୁଲ୍ସ ଆସୋସିଏସନ'ରେ ଓଡ଼ିଶା ବାହାରର ବହୁ ସଭ୍ୟ ରହିଯାଇଥିଲେ । ଆସୋସିଏସନ୍‌ର ମୂଳ ଲକ୍ଷ୍ୟ ଥିଲା ଓଡ଼ିଶାର ଜନସାଧାରଣଙ୍କ ଉପକାର ପାଇଁ ଇଂରେଜ ସରକାରଙ୍କୁ ପ୍ରସ୍ତାବ ଦେବା, ସରକାରୀ ଆଇନ୍ ପ୍ରଣୟନ ପାଇଁ ପ୍ରସ୍ତାବ ଦେବା, ସମସାମୟିକ ବିଶିଷ୍ଟ ବ୍ୟକ୍ତି ତଥା ଭାଇସ୍‌ରାୟଙ୍କର ସହରକୁ ଆଗମନ ସମୟରେ ସମ୍ବର୍ଦ୍ଧନା ପ୍ରଦାନ କରିବା । କିନ୍ତୁ ବାସ୍ତବରେ ଏହି ଆସୋସିଏସନ୍ ମୂଳ ଲକ୍ଷ୍ୟରୁ ଚ୍ୟୁତ ହୋଇ କେବଳ ବଡ଼ ଲୋକଙ୍କୁ ସମ୍ବର୍ଦ୍ଧନା ଦେବାରେ ଏହାର କାର୍ଯ୍ୟ ସୀମିତ ହୋଇଯାଇଥିଲା । ଏଥିରେ ଓଡ଼ିଆମାନଙ୍କ ମଧ୍ୟରୁ ଭିକାରୀ ଚରଣ, ଗୋକୁଳାନନ୍ଦ ଚୌଧୁରୀ, କଳ୍ପତରୁ ଦାସ, ମଦନମୋହନ ପଟ୍ଟନାୟକ ଓ ମାୟାଧର ଦାସ ପ୍ରଭୃତି ସଭ୍ୟ ଥିଲେ । ଏହାର ପ୍ରେସିଡେଣ୍ଟ ଥିଲେ ଗୌରୀଶଙ୍କର ରାୟ ଓ ସେକ୍ରେଟେରୀ ଥିଲେ ରାମଶଙ୍କର ରାୟ । ଗୌରୀଶଙ୍କର ଓ ରାମଶଙ୍କର ଓଡ଼ିଶା ତଥା କଟକ ସହରର ଉନ୍ନତି ପାଇଁ ମନପ୍ରାଣ ଦେଇ କାମ କରୁଥିଲେ । ଗୌରୀଶଙ୍କରଙ୍କର ବାର୍ଦ୍ଧକ୍ୟର ସୁଯୋଗ ନେଇ ଓଡ଼ିଶା ବାହାରର ବ୍ୟକ୍ତିମାନେ ଅନୁଷ୍ଠାନକୁ ଏକତରଫିଆ କରାଇ ସଭା ସମ୍ବର୍ଦ୍ଧନାରେ ହିଁ ଅନୁଷ୍ଠାନକୁ ଲଗାଇଲେ । ଓଡ଼ିଆ ଲୋକମାନେ ଏଠାରେ ଅନେକ ସମୟରେ ଗୌଣ ହୋଇପଡ଼ୁଥିଲେ ।

ସେତେବେଳେ ବାର୍‌ରେ ଦଶ/ବାର ଜଣ ଓଡ଼ିଆ ଓକିଲ ଥିଲେ । ଏମାନେ ସ୍ଥିର କଲେ ଯେ ଯଦି ଏହି ସଂସ୍ଥାରେ ଓଡ଼ିଆ ସଭ୍ୟ ବେଶି ନ ରହନ୍ତି ତେବେ ଓଡ଼ିଶାର ଉନ୍ନତି ପାଇଁ ସରକାରଙ୍କୁ ପ୍ରସ୍ତାବ ଦେଇହେବ ନାହିଁ । ସେମାନେ ପ୍ରସ୍ତାବ କଲେ ଯେ, ଯେଉଁମାନେ ଓଡ଼ିଶାରେ ସ୍ଥାୟୀ ଭାବରେ ବସବାସ କରୁଥିବେ, କେବଳ ସେହିମାନେ ହିଁ ଏହାର ସଭ୍ୟ ହୋଇପାରିବେ ।

ଥରେ ରାମଶଙ୍କର ବାବୁ ଟାଉନ ହଲରେ ଗୋଟିଏ ସଭା ଡକାଇଲେ । ଏଭଳି ସଭାକୁ ପ୍ରାୟତଃ ବିଶେଷ ସଭ୍ୟ ଆସନ୍ତି ନାହିଁ, ମାତ୍ର ସମସ୍ତ ଓଡ଼ିଆ ଓକିଲମାନେ କଥାବାର୍ତ୍ତା ହୋଇ ଏହି ସଭାରେ ଉପସ୍ଥିତ ହେଲେ । ସଭାର କାର୍ଯ୍ୟସୂଚୀ ଅନୁସାରେ କେତେକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଉତ୍ଥାପନ ହେବାର ଥିଲା, ମାତ୍ର ଅଣଓଡ଼ିଆ ସଭ୍ୟମାନେ ବେଶି ସଂଖ୍ୟାରେ ନଥିବାରୁ ସଭାକୁ ବାତିଲ କରିବାର ପ୍ରସ୍ତାବ ଉଠିଲା । ଭିକାରୀ ଚରଣଙ୍କ ଯୋଗସୂତ୍ରରେ ସମସ୍ତ ଓଡ଼ିଆ ସଭ୍ୟ

ଉପସ୍ଥିତ ଥିବାରୁ ସଭାକାର୍ଯ୍ୟ ଚାଲିଲା । ଏହି ସଭାରେ ସ୍ଥିର ହେଲା ଯେ ଓଡ଼ିଶା ବାହାରର ସଭ୍ୟମାନଙ୍କୁ ସଭାରୁ ବିଦା କରିଦିଆଯିବ ଓ ତା ସହିତ ଅନୁଷ୍ଠାନର ନାମ ବି ବଦଳାଯିବ । ଓଡ଼ିଶା ପିପୁଲ୍‌ସ ଆସୋସିଏସନ ବଦଳରେ ଓଡ଼ିଆ ପିପୁଲ୍‌ସ ଆସୋସିଏସନ ରଖାଗଲା । ଏଥିରେ ଗୋକୁଳାନନ୍ଦ ଚୌଧୁରୀ ସଭାପତି, କଳ୍ପତରୁ ଦାସ ସଂପାଦକ ଓ ଭିକାରୀ ଚରଣ ସହକାରୀ ସଂପାଦକ ଭାବରେ ନିର୍ବାଚିତ ହେଲେ । ପରେ କଳ୍ପତରୁ ବାବୁଙ୍କ ମୃତ୍ୟୁ ପରେ ଭିକାରୀ ଚରଣ ଏହି ସଭାର ସଂପାଦକ ହେଲେ ।

ଏହି ସମୟରେ ଭିକାରୀ ଚରଣ ରାମଶଙ୍କରଙ୍କର ଜୁନିଅର ଭାବରେ କାମ କରୁଥିଲେ । ଅଣ ଓଡ଼ିଆ ମେମ୍ବରମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ଓଡ଼ିଶାବାସୀ ବଙ୍ଗାଳୀମାନେ ଏଥିରୁ ଇସ୍ତଫା ଦେଲେ । ପୁଣି ରାମଶଙ୍କର ଭିକାରୀ ଚରଣଙ୍କୁ ଏଥିରୁ ଇସ୍ତଫା ଦେବାକୁ କହିଲେ । ଭିକାରି ଚରଣ ଯେ ଏ ସମସ୍ତ କାର୍ଯ୍ୟର ସୂତ୍ରଧର ଏକଥା ପ୍ରଥମେ ରାମଶଙ୍କର ଜାଣି ନଥିଲେ । ଭିକାରୀ ଚରଣ ସେହିଦିନ ଠାରୁ ରାମଶଙ୍କରଙ୍କର ଜୁନିଅର ଭାବରେ ନ ରହି ନିଜେ ଓକିଲାତି ଆରମ୍ଭ କଲେ ।

ଏ ସଂପର୍କରେ ଖବର ପାଇ ମିଷ୍ଟର ମଧୁସୂଦନ ଦାସ ନିଜେ ଆସି ଭିକାରୀ ଚରଣଙ୍କୁ ଅଭିନନ୍ଦନ ଜଣାଇଥିଲେ । ଓଡ଼ିଶା ପିପୁଲ୍‌ସ ଆସୋସିଏସନ ଶେଷରେ ଓଡ଼ିଆ ଆସୋସିଏସନ ହୋଇ କାର୍ଯ୍ୟ କଲା । ଏହି ଆସୋସିଏସନ ଓଡ଼ିଆମାନଙ୍କ ସ୍ୱାର୍ଥରକ୍ଷା ପାଇଁ ସତତ ଚେଷ୍ଟା କରିଆସୁଥିଲା । ଓଡ଼ିଶା ବାହାରେ ପଢ଼ିବା ପାଇଁ ଯେଉଁ ଛାତ୍ରମାନେ ଇଚ୍ଛାପ୍ରକାଶ କରୁଥିଲେ, ଏହି ସଂସ୍ଥା ସୁପାରିଶ କରି ଛାତ୍ର ପ୍ରେରଣ କରୁଥିଲା ।

ଓଡ଼ିଶାରେ ପୋଷ୍ଟାଲ ଡିଭିଜନ- ବିହାର ଓଡ଼ିଶା ମିଶିକରି ଥିବା ସମୟରେ ଓଡ଼ିଶାରେ କୌଣସି ପୋଷ୍ଟାଲ ଡିଭିଜନ ନଥିଲା । ଏଣୁ ଓଡ଼ିଶାର କୌଣସି ସ୍ଥାନରୁ ଚିଠି ସେଇ ଓଡ଼ିଶା ମଧ୍ୟକୁ ଯିବାକୁ ହେଲେ ବିହାର ବାଟଦେଇ ଆସୁଥିଲା । ଫଳରେ ଚିଠିପତ୍ର ପହଁଚିବାରେ ଅଯଥା ବିଳମ୍ବ ହେଉଥିଲା । କଟକ ସହରରେ ଦିନକୁ ମାତ୍ର ଗୋଟିଏ ଥର ଚିଠି ବଣ୍ଟନର ବ୍ୟବସ୍ଥା ଥିଲା । ଓଡ଼ିଶାରେ ଯଦି ପୋଷ୍ଟାଲ ଡିଭିଜନ ହୁଅନ୍ତା, ତେବେ ଏ ସବୁର ଅସୁବିଧା ରହନ୍ତା ନାହିଁ । ଏ ସଂପର୍କରେ ଅନେକ ଲୋକ ଭିକାରୀ ଚରଣଙ୍କୁ ଅବଗତ କରାଇଲେ । 'ଓଡ଼ିଆ ପିପୁଲସ ଆସୋସିଏସନ' ମାଧ୍ୟମରେ ଭିକାରୀ ଚରଣ ବହୁତ ଲେଖାଲେଖି କଲାପରେ ଯାଇ ଓଡ଼ିଶାରେ ପୋଷ୍ଟାଲ ଡିଭିଜନ ଖୋଲିଲା ।

ଏହା ଖୋଲିବା ପୂର୍ବରୁ ଶ୍ରୀକୃଷ୍ଣ ପ୍ରସାଦ ଇନ୍‌କ୍ୱାରୀ ନିମନ୍ତେ କଟକ ଆସିଲେ । ସେ ଆସି ପ୍ରଥମେ ଭିକାରୀ ଚରଣଙ୍କୁ ଖୋଜିଲେ । କିନ୍ତୁ ଭିକାରୀ ବାବୁ ତାଙ୍କୁ ଏକ ପତ୍ରଦ୍ୱାରା ଜଣାଇଥିଲେ ଯେ 'ସେ ଗୋଟିଏ ପ୍ରଦର୍ଶନୀ ପରିଚାଳନା କରିବାକୁ ଯାଉଥିବାରୁ, ଅନ୍ୟ ସଦସ୍ୟମାନେ ଏ କାର୍ଯ୍ୟ ଚଳାଇନେବେ । ଏହାପରେ ମାଡ୍ରାସ ପୋଷ୍ଟାଲ ଜେନେରାଲ ମ୍ୟାନେଜର, ବେଙ୍ଗଲ ପୋଷ୍ଟାଲ ଜେନେରାଲ ମ୍ୟାନେଜର ଓ ପୋଷ୍ଟାଲ ଡାଇରେକ୍ଟର ଜେନେରାଲ ଆସି କଟକରେ ପହଁଚିଲେ । ସେତେବେଳକୁ ମିଃ ଗୋଖ୍‌ଲେ ସେକ୍ରେଟାରୀଏଟ୍‌କୁ ଆସିଥାନ୍ତି । ସେମାନେ ଖବର ପାଇଲେ ଯେ ଭିକାରୀ ବାବୁ କଟକରେ ନାହାନ୍ତି । ଏଣୁ ସେମାନେ ତା ପରଦିନ ଆସିଲେ । ଗୋଖଲେ ସାହେବଙ୍କ ମାଧ୍ୟମରେ ସେମାନେ ଭିକାରୀ ବାବୁଙ୍କ ଘରେ ଆସି ଦେଖାକଲେ । ସମସ୍ତଙ୍କ ଉପସ୍ଥିତିରେ ଆଲୋଚନା ହୋଇ କଟକରେ ପୋଷ୍ଟାଲ ଡିଭିଜନ ଖୋଲିଲା । କର୍ମଚାରୀ ବଢ଼ିଲେ । ଦିନକୁ ଦୁଇଥର ଚିଠି ବଣ୍ଟନର ବ୍ୟବସ୍ଥା ହେଲା । ଓଡ଼ିଶା ପିପୁଲ୍‌ସ ଆସେସିଏସନ୍ ମାଧ୍ୟମରେ ସରକାରଙ୍କୁ ନାନା ସମୟରେ ନାନା ପ୍ରକାର ପ୍ରସ୍ତାବ ଦିଆଯାଉଥିଲା । ସରକାର କୌଣସି ନୂଆ ସ୍ଥାନୀୟ ଆଇନ୍ ପ୍ରଣୟନ ପୂର୍ବରୁ ଏହି ଓଡ଼ିଆ ଆସୋସିଏସନର ପରାମର୍ଶ ଲୋଡୁଥିଲେ ।

ପ୍ରାଣୀ ମଙ୍ଗଳ ଓ ଜୀବ ନିଷ୍ଠୁରତା ନିୟନ୍ତ୍ରଣ ସଂସ୍ଥାନ- ଗୃହପାଳିତ ପଶୁ ଓ ବ୍ୟବସାୟ ପାଇଁ ନିୟୋଜିତ ପଶୁମାନଙ୍କ ସ୍ୱାସ୍ଥ୍ୟ ସୁରକ୍ଷା ଓ ସେମାନଙ୍କ ପ୍ରତି ହେଉଥିବା ନିଷ୍ଠୁର ବ୍ୟବହାରର ନିରାକରଣ ପାଇଁ ସରକାରୀ ସ୍ତରରେ ଯେଉଁ ସଂସ୍ଥା ଥିଲା, ଓଡ଼ିଶା ସ୍ୱତନ୍ତ୍ର ହେଲା ପରେ ଏହାର କାର୍ଯ୍ୟାଳୟ ଓଡ଼ିଶାରେ ଖୋଲିଲା । ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ବର୍ମ୍ମ ଏହାର ସଂପାଦକ ଥିଲେ । ଭିକାରୀ ଚରଣ ଏଥିରେ ଜଣେ ସଭ୍ୟ ଥିଲେ । ଲକ୍ଷ୍ମୀନାରାୟଣ ବାବୁଙ୍କର ମୃତ୍ୟୁ ହେବା ପରେ ସର୍ବସମ୍ମତି କ୍ରମେ ଭିକାରୀ ଚରଣ ଏହାର ସଂପାଦକ ମନୋନୀତ ହେଲେ । ତା ୨୫.୦୫.୧୯୪୧ ରେ ଭିକାରୀ ଚରଣ ଏହାର ସଂପାଦକ ଦାୟିତ୍ୱ ବହନ କଲେ । ଏହା ପୂର୍ବରୁ ଲକ୍ଷ୍ମୀନାରାୟଣ ବାବୁ ଏପରି କାର୍ଯ୍ୟ ଚଳାଇ ନେଉଥିଲେ ଯେ ଅନ୍ୟ ସଭ୍ୟମାନଙ୍କର ମୁଣ୍ଡ ଖେଳାଇବା ଦରକାର ପଡୁନଥିଲା । ଭିକାରୀ ଚରଣ ଦେଖିଲେ ଶଗଡ଼ିଆ, ଘୋଡାଗାଡିବାଲାଙ୍କ ଠାରୁ ଆଦାୟ ହେଉଥିବା ଜୋରିମନା ହିଁ ଏହାର ମୁଖ୍ୟ ଆୟ । ସରକାର ଏ ସଂପର୍କରେ କିଛି ମୁଣ୍ଡ ଖେଳାନ୍ତି ନାହିଁ ।

ଭିକାରୀ ଚରଣ ତତ୍କାଳୀନ ରେଭିନ୍ୟୁ କମିଶନରଙ୍କୁ ଏକ ଦୀର୍ଘ ପତ୍ରଦ୍ୱାରା ଜଣାଇଲେ ଯେ, ଯେଉଁ ଲୋକ ଏହାର ଭାର ନେବ ସେ ହୁଏତ ଧନୀ ହେବା ଆବଶ୍ୟକ କିଂବା ନିଷ୍ଠୁର ହେବା ଆବଶ୍ୟକ । ଧନୀ ହେଲେ ହାତରୁ ବ୍ୟୟ

କରିପାରିବ, ନିଷ୍ଠୁର ହେଲେ ଅଭିଯୁକ୍ତ ଶଗଡ଼ ଗାଡ଼ି ଓ ବଗି ଗୁଡ଼ିକୁ ଅଧିକ ସଂଖ୍ୟାରେ ଚାଲାଣ କରି ଅଧିକ ଆୟର ବ୍ୟବସ୍ଥା କରିପାରିବ । ଭିକାରି ବାବୁ ଦେଖିଲେ ସେ ନିଷ୍ଠୁର ନୁହନ୍ତି କି ଧନୀ ନୁହନ୍ତି । ଏଣୁ କାର୍ଯ୍ୟ ଚଳାଇବାକୁ ହେଲେ ସରକାର ଅନୁଦାନ ଦେବା ଆବଶ୍ୟକ ଓ ଯେତେହାରରେ ଜୋରିମାନା ଆଦାୟ ହେବ ସେ ସବୁ ସରକାରୀ ତହବିଲରେ ପଇଠ କରାଯିବ । ଏ ସଂପର୍କରେ ଯେଉଁ ଅପରାଧ ହେଉଛି ତାହା ମଧ୍ୟ ହ୍ରାସ ପାଇବ । ତାପରେ ଭିକାରୀ ଚରଣ କଟକ ସହରର ଗୋରୁଗାଡ଼ି, ଘୋଡ଼ାଗାଡ଼ି ଓ ଠେଲା ମାଲିକମାନଙ୍କର ଗୋଟିଏ ସମିତି ଗଠନ କରି ସେମାନଙ୍କର ଉନ୍ନତି ପାଇଁ ଚେଷ୍ଟା କଲେ । କଟକ ସହରର ଶଗଡ଼ିଆ ସଂଘ ଗାଡ଼ି ଶଗଡ଼ ଟାଣୁଥିବା ଗୋରୁ ମଇଁଷି ମାନଙ୍କର ଯତ୍ନ ଓ ଚିକିତ୍ସା ପାଇଁ ପଦକ୍ଷେପ ଗ୍ରହଣ କଲେ ।

ସହଯୋଗ ସମିତି କଟକରେ ୧୯୦୯ ମସିହା ବେଳକୁ କୋ-ଅପରେଟିଭ ବ୍ୟାଙ୍କ ଖୋଲାଯାଇଥିଲା । ସମବାୟ ଆନ୍ଦୋଳନର ଲକ୍ଷ୍ୟ, ଲୋକମାନଙ୍କର ଆର୍ଥିକ ଉନ୍ନତି ସାଧନ, ମାତ୍ର ଜନସଚେତନତା ଅଭାବରୁ ଏହା ଗୋଟିଏ କ୍ଷତିଗ୍ରସ୍ତ ସଂସ୍ଥାରେ ପରିଣତ ହୋଇଥିଲା । ଏବେ ମଧ୍ୟ ଅନେକ ସହଯୋଗ ସମିତି ନିଷ୍ଠା ଅଭାବରୁ ଓ କର୍ମକର୍ତ୍ତାଙ୍କ ତତ୍ପରତା ଅଭାବରୁ କେବଳ କ୍ଷତିଗ୍ରସ୍ତ ହେଉନି ଏହାର ଅଂଶଧନ ଗ୍ରହୀତାଙ୍କର ସର୍ବନାଶର କାରଣ ହେଉଛି । ସମବାୟ ବ୍ୟାଙ୍କ ଲୋକମାନଙ୍କୁ ଋଣ ଦିଏ ଓ ଋଣର ଉପଯୁକ୍ତ ବିନିଯୋଗର ବାଟ ବତାଇଦିଏ ଅଥବା ତଦାରଖ କରେ । ମାତ୍ର ଆମର ଲୋକମାନେ ସମବାୟ ଋଣକୁ ନେଇ ଅପବ୍ୟୟ କରି କିସ୍ତି ଖିଲାପରେ ପଡ଼ନ୍ତି ଓ ସ୍ଥାବର ଅସ୍ଥାବର ସଂପତ୍ତିକୁ ନିଲାମରେ ଦିଅନ୍ତି । ଏଇସବୁ କାରଣରୁ ଭିକାରୀ ଚରଣ ଏ ସଂସ୍ଥା ପ୍ରତି ବୀତସ୍ପୃହ ଥିଲେ । ଓକିଲ ରାମଚନ୍ଦ୍ର ଦାସଙ୍କ ଯୋଗୁ ସେ ଏହି ସମବାୟ ସଂସ୍ଥାରେ ମିଶିଲେ । ଭିକାରୀ ଚରଣ ସବୁବେଳେ ଛୋଟ ଘଟଣାଟିକୁ ଟିକିନିଖି କରି ଦେଖନ୍ତି । କୋ-ଅପରେଟିଭ୍ ବ୍ୟାଙ୍କରେ ସାମିଲି ହେବା ପରେ ସେ ଏହାର କାର୍ଯ୍ୟପ୍ରଣାଳୀ ଓ ଏହା ମଧ୍ୟରେ ଦେଖା ଦେଇଥିବା ନାନା ଦୋଷ ତ୍ରୁଟିକୁ ଲକ୍ଷ୍ୟକରି ତାର ସମାଧାନର ବାଟ ଖୋଜିଲେ । ଭିକାରୀ ଚରଣ ଅଂଶଧନ ଜମାକାରୀ ଋଣ ଗ୍ରହୀତାଙ୍କ ଗ୍ରାମ ଓ ଘର ବୁଲି ଏ ସଂପର୍କରେ ଅନୁସଂଧାନ କରି ବାଟ ଖୋଜି ସଂସ୍ଥାକୁ ଆଗେଇ ନେଲେ ।

ସେ ସମୟରେ ମୟୂରଭଞ୍ଜ ଷ୍ଟେଟ ସବୁ ବିଷୟରେ ଆଗୁଆ ଥାଏ । ମୟୂରଭଞ୍ଜ ମହାରାଜା ତାଙ୍କ ପ୍ରଜାଙ୍କ ପାଇଁ ନାନା ଜନମଙ୍ଗଳକର କାର୍ଯ୍ୟ କରୁଥାନ୍ତି । ଭିକାରୀ ଚରଣଙ୍କର ପୂର୍ବରୁ ମୟୂରଭଞ୍ଜ ସହିତ ଉତ୍ତମ ସଂପର୍କ ଥାଏ । ମୟୂରଭଞ୍ଜ

ଷ୍ଟେଟରୁ ନିମନ୍ତ୍ରଣ ପାଇ ଭିକାରୀ ଚରଣ 'ପ୍ରାଥମିକ ଶିକ୍ଷା ଓ କୁଟୀର ଶିଳ୍ପ'ର ନିର୍ଦ୍ଦେଶକ ତଥା ପରାମର୍ଶଦାତା ଭାବରେ ଯୋଗଦେବା ସଙ୍ଗେ ସଙ୍ଗେ ସେଠାରେ ସମବାୟ ଆନ୍ଦୋଳନ କାର୍ଯ୍ୟ କରିବାକୁ ଲାଗିଲେ । ଏହି କାର୍ଯ୍ୟ ସହିତ ମହାରାଜା ଭିକାରୀ ଚରଣଙ୍କୁ କୃଷି ଓ ଗୋପାଳନ ବିଭାଗର ପରାମର୍ଶଦାତା ଭାବରେ ମଧ୍ୟ ନିଯୁକ୍ତି ପ୍ରଦାନ କଲେ ।

ଭିକାରୀ ଚରଣ ସହଯୋଗ ସମିତିର ତତ୍ତ୍ୱ ନେବା ବେଳକୁ ସେତେବେଳେ ଷ୍ଟେଟରେ ସମୁଦାୟ ଏଗାରଟି ସମବାୟ ସମିତି ରୁଗ୍ଣ ଅବସ୍ଥାରେ ଥାଏ ଓ ଜଣେ ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ଏହାର ତତ୍ତ୍ୱାବଧାନରେ ଥାଆନ୍ତି ।

ଭିକାରୀ ଚରଣ ଏହାର ଆମୂଳଚୂଳ ପରିବର୍ତ୍ତନ କରାଇ ଗ୍ରାମେ ଗ୍ରାମେ ବୁଲି ଲୋକମାନଙ୍କ ମଧ୍ୟରେ ସଚେତନତା ଆଣିବାକୁ ଚେଷ୍ଟାକଲେ । ପ୍ରାୟ ଦେଢ଼ବର୍ଷ ମଧ୍ୟରେ ଏହା ବଢ଼ି ବଢ଼ି ୪୨ଟି ସୋସାଇଟି ଗଠିତ ହେଲା । ଏହି ଏକ ବର୍ଷ ଛ'ମାସ ମଧ୍ୟରେ ୩୧ଟି ସମିତି ଗଢ଼ାହେବା ସଙ୍ଗେ ସଙ୍ଗେ ପୂର୍ବ ସମିତି ଗୁଡ଼ିକର ଉନ୍ନତି ସାଧନ ହୋଇପାରିଲା । ସେତେବେଳେ ସେହି ଧାରା ଦୀର୍ଘଦିନ ଧରି ମୟୂରଭଞ୍ଜରେ ଅବ୍ୟାହତ ରହି ଆସିଥିଲା ।

## ହରିବୋଲ ଭାଇ ଗୋବିନ୍ଦବୋଲ

ପ୍ରାକ୍ ସ୍ୱାଧୀନତା କାଳରେ ଦେୱାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ର ଓଡ଼ିଶାରେ ଜଣେ ଜଣାଶୁଣା ପୋଲିସ୍ ଅଫିସର ଥିଲେ । ଇଂରେଜ ସରକାରଙ୍କୁ ସୁହାଇଲା ଭଳି ସେ ସର୍ବସାଧାରଣଙ୍କ ଉପରେ ଏପରି ଆତଙ୍କ ଖେଳାଇ ଦେଉଥିଲେ ଯେ ମହାପାତ୍ର ସାହେବଙ୍କ ନାମ ହିଁ ସେତେବେଳେ ବଙ୍ଗଳା ବିହାର ଓଡ଼ିଶାରେ ଏକ ଚମକ ଆଣି ଦେଇଥିଲା । ସାଧାରଣ ସବ୍-ଇନସ୍‌ପେକ୍ଟର ଭାବରେ ଯୋଗ ଦେଇଥିଲେ ବି ଇଂରେଜମାନଙ୍କୁ ତୋଷାମଦ ଓ ଭାରତୀୟମାନଙ୍କ ଉପରେ ଅତ୍ୟାଚାର କରିବାର୍ ଗୁଣଯୋଗୁ ସେ ଓଡ଼ିଶାର ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ ପଦକୁ ଉଠି ପାରିଥିଲେ । ତାଙ୍କ ଅତ୍ୟାଚାର ସଂପର୍କରେ ନାନା କାହାଣୀ ଶୁଣାଯାଏ ।

ସ୍ୱାଧୀନତା ଆନ୍ଦୋଳନ ସମୟରେ କନିକା ରାଜ୍ୟରେ ପ୍ରଜାପୀଡ଼ନ ଅସହ୍ୟ ହୋଇ ପଡ଼ିଲା । ଉତ୍କଳମଣି ଗୋପବନ୍ଧୁ ପ୍ରମୁଖ ସେଥିପାଇଁ ତାକୁ ଦୁଃଖିନୀ କନିକା ବୋଲି କହୁଥିଲେ । ସେହି ଆନ୍ଦୋଳନ ସମୟର ଗୋଟିଏ ଘଟଣା । ପ୍ରଜାମାନେ ଭିନ୍ନ ଭିନ୍ନ ସ୍ଥାନରେ ମେଳିବାନ୍ଧି ନାନା ପ୍ରକାର ଉତ୍ପୀଡ଼ନର ଅଭିଯୋଗମାନ ସରକାରଙ୍କୁ ପଠାଉଥିଲେ । ଅନ୍ୟପକ୍ଷରେ କନିକା ରାଜା ତାର ଯୋଗେ ବଡ଼ ବଡ଼

ଅଫିସରମାନଙ୍କୁ ଅବଗତ କରାଇଥିଲେ । ସେସମୟକୁ ଶ୍ରୀକୃଷ୍ଣ ମହାପାତ୍ର ଓଡ଼ିଶାର ଏସ୍.ପି. ଥିବାରୁ କନିକା ତାଙ୍କ ଇଲାକା ଅନ୍ତର୍ଗତ ଥିଲା । କୌଣସି ଏକ ସାମାନ୍ୟ ଘଟଣାକୁ ଗୁରୁତର ରୂପ ଦେଇ ଶ୍ରୀ ମହାପାତ୍ର ମିଲିଟାରୀ ପୋଲିସ ଅଣାଇ ଗ୍ରାମେ ଗ୍ରାମେ ଆତଙ୍କରାଜ ଚଳାଉଥିଲେ ।

ଏହି ଘଟଣା ସମୟରେ କେତେକ କଂଗ୍ରେସ କର୍ମୀ ଉପସ୍ଥିତ ହୋଇ ଜନତାଙ୍କୁ ସାହାଯ୍ୟ କରିବା ପାଇଁ ସମସ୍ତ ଘଟଣାକୁ 'ଉତ୍କଳ ଦୀପିକା' ଓ 'ସମାଜ'କୁ ପ୍ରକାଶ ପାଇଁ ପଠାଇଲେ । କିଛିଦିନ ପରେ ଉପରୋକ୍ତ ପତ୍ରିକା ଦ୍ୱୟ ଘଟଣାର ଗୁରୁତ୍ୱ ଉପଲବ୍ଧି କରି କ୍ରମାନ୍ୱୟରେ ଅତ୍ୟାଚାର କାହାଣୀ ଛପାଇଲେ । ସେ ସମୟରେ ପୋଲିସ୍ ଆତଙ୍କରାଜ ଚଳାଇ ପ୍ରଜାମାନଙ୍କୁ ବାନ୍ଧିଆଣି କଟକ ଜେଲରେ ରଖିଲେ । ସତ୍ୟ ଘଟଣା ପ୍ରକାଶିତ ହୋଇ ଜନମତ ଭିନ୍ନ ଆଡ଼କୁ ଯିବାର ଦେଖି ସରକାରଙ୍କ ତରଫରୁ ଉପରୋକ୍ତ ଦୁଇଟି ପତ୍ରିକା ବିରୋଧରେ ମହାପାତ୍ର ସାହେବ ନାଲିସ୍ ଦାୟେର କଲେ । ସେହି ମକଦ୍ଦମାର ବିଚାର ନିମନ୍ତେ ଜଣେ ଇଉରୋପୀୟ ମାଜିଷ୍ଟ୍ରେଟ ନିଯୁକ୍ତି ପାଇଲେ । ମୁଦେଲିଙ୍କ ତରଫରୁ ବାରିଷ୍ଟର ନିଯୁକ୍ତ ହୋଇଥିଲେ । ମୁଦଲୀଙ୍କ ତରଫରୁ ମଧ୍ୟ ଓକିଲ ନିଯୁକ୍ତ ହେଲେ ।

ବିଚାର ସମୟରେ ଦେଖାଗଲା ଯେ ପୂର୍ବରୁ ପ୍ରଜାମାନଙ୍କ ତରଫରୁ ଯେଉଁ ଦରଖାସ୍ତ ଦିଆଯାଇଥିଲା ସେଗୁଡ଼ିକ 'ଗୋପନୀୟ' ବିଭାଗରେ ଥିବାରୁ ସାଧାରଣରେ ପ୍ରକାଶ୍ୟ ସମ୍ଭବ ନୁହେଁ । ପୁଣି ଯେଉଁସବୁ ଟେଲିଗ୍ରାମ୍ ପଠାଯାଇଥିଲା ସେଗୁଡ଼ିକ ମଧ୍ୟ ବର୍ଷକ ଭିତରେ ପୋଡ଼ି ଦିଆଯାଇଛି । ସରକାରୀ ଲୋକଙ୍କ ଫିକର ଯୋଗୁଁ ମକଦ୍ଦମା ଆଗେଇବାର ସମ୍ଭାବନା ନଥାଏ । ପୁଣି ମହାପାତ୍ର ସାହେବ ଅନ୍ୟ କୌଶଳ ପ୍ରୟୋଗ କରି ବିଶିଷ୍ଟ ଲୋକଙ୍କ ଦ୍ୱାରା ଏହି ମୋକଦ୍ଦମାର ସର୍ତ୍ତମୂଳକ ଆପୋଷ ମୀମାଂସା ପାଇଁ ପ୍ରସ୍ତାବ ଦେଲେ । ସେ ମୀମାଂସାର ସର୍ତ୍ତ ହେଲା ପୋଲିସ ବିଭାଗର ଚଉକିଆ ଠାରୁ ଏସ୍.ପି. ପର୍ଯ୍ୟନ୍ତ ସମସ୍ତଙ୍କୁ ଉପଯୁକ୍ତ ପରିମାଣରେ କ୍ଷତିପୂରଣ ଦେବାକୁ ହେବ । ସେ କ୍ଷତିର ଆନୁମାନିକ ମୂଲ୍ୟ ହିସାବ କରିବାରୁ ଜଣାଗଲା ଯେ 'ସମାଜ' ପ୍ରେସ ଓ 'ଦୀପିକା' ପ୍ରେସର ସମସ୍ତ ସ୍ଥାବର ଅସ୍ଥାବର ସଂପତ୍ତି ବି ମୂଲ୍ୟ ଭରଣ କରିବାକୁ ଯଥେଷ୍ଟ ହେବନି । ସେ ବିଚାର ଓ ମୀମାଂସା ପ୍ରସ୍ତାବ ଯେ ଏକ ପ୍ରହସନ ଏହା ସମସ୍ତଙ୍କୁ ଜଣା ।

ଏହାପରେ ଶ୍ରୀ ରାଧାନାଥ ରଥଙ୍କ ଆୟୋଜନରେ ଭିକାରୀ ଚରଣଙ୍କ ଘରେ ବିଭିନ୍ନ ବ୍ୟକ୍ତିମାନଙ୍କର ଆଲୋଚନା ଆରମ୍ଭ ହେଲା । ଭିକାରୀ ଚରଣ ଏହାର ବାଟ

ଖୋଜିବାକୁ କିଛିଦିନ ସମୟ ଲାଗିଲେ । ସେ ଚିନ୍ତାକଲେ ସରକାରଙ୍କ ପାଖରୁ ବିଚାର ପାଇଁ ଆବେଦନ ପତ୍ରଗୁଡ଼ିକ ସିନା ମିଳୁନି ମାତ୍ର ଉକ୍ତ ଆବେଦନକାରୀମାନଙ୍କ ପାଖରେ ଥିବା ନକଲ ହେଲେ ବି ମକଦ୍ଦମା ଆଗେଇ ପାରିବ । ଏଣୁ ସେ କନିକାର ବିଶିଷ୍ଟ ଲୋକମାନଙ୍କ ପାଖକୁ ଚିଠି ଲେଖି ଭଦ୍ରକ ବାଟେ କନିକା ବାହାରିଲେ । ଏହି ସମୟ ମଧ୍ୟରେ କନିକାର ଲୋକମାନେ ସମସ୍ତ ତଥ୍ୟ ସଂଗ୍ରହ କରି ସାରିଥିଲେ । ଭିକାରୀ ଚରଣ ଭଦ୍ରକ ଷ୍ଟେସନରେ ଓହ୍ଲାଇଲା ବେଳକୁ ଷ୍ଟେସନରେ ହିଁ ସମସ୍ତ କାଗଜ ପତ୍ର ପାଇଗଲେ । ଭିକାରୀ ଚରଣ ସେଠାରୁ ସମସ୍ତ ତଥ୍ୟ ନେଇ ଫେରିଆସି ଜଣାଇଲେ ଯେ ମକଦ୍ଦମା ରଫା କରିବାର ପ୍ରଶ୍ନ ଉଠୁନି । ତା ପରେ କଳ୍ପତରୁ ଦାସ ଓ ଭିକାରୀ ଚରଣ ମିଶି ପୂର୍ବ ଓକିଲମାନଙ୍କ ସହଯୋଗରେ ମକଦ୍ଦମାକୁ ଆଗେଇବାକୁ ଲାଗିଲେ । ଏହି ସମୟରେ 'ଉତ୍କଳ ସାହିତ୍ୟ'ରେ ଭିକାରୀ ଚରଣଙ୍କର 'ହରିବୋଲ' ବୋଲି ଗୋଟିଏ କବିତା ପ୍ରକାଶ ପାଇଲା । ସେ କବିତାର ମର୍ମ ରାଜକିଶୋର ଦାସ, ସୁଦାମ ଚରଣ ନାୟକ ଓ ନିଜେ ଶ୍ରୀକୃଷ୍ଣ ମହାପାତ୍ର ଭଲଭାବରେ ବୁଝି ପାରିଲେ । ମହାପାତ୍ର ସାହେବ ପ୍ରଜାମାନଙ୍କ ଭିତରେ ସର୍ବଦା ଆତଙ୍କ ଖେଳାଇ ଦେଉଥିଲେ ବି ମୁହଁରେ 'ହରିବୋଲ', 'ହରିବୋଲ' କହୁଥିଲେ । ସୁଦାମ ବାବୁ ଖବର ଦେଲେ ଯେ ମହାପାତ୍ରେ ଆଉ 'ହରିବୋଲ' କହୁନାହାନ୍ତି । 'ଗୋବିନ୍ଦ, ଗୋବିନ୍ଦ' ବୋଲି ସର୍ବଦା କହୁଛନ୍ତି । ତାପରେ 'ଉତ୍କଳ ସାହିତ୍ୟ'ରେ 'ହରିବୋଲ ଭାଇ ଗୋବିନ୍ଦବୋଲ' ବୋଲି ଆଉ ଗୋଟିଏ କବିତା ଭିକାରୀ ଚରଣ ପ୍ରକାଶ କଲେ ।

ଏହାପରେ ମୋକଦ୍ଦମାର ମୋଡ଼ ବଦଳିଗଲା । ପ୍ରତିପକ୍ଷର ଓକିଲ ସାମାନ୍ୟ କ୍ଷତିପୂରଣରେ ମକଦ୍ଦମା ରଫା ହୋଇ ପାରିବ ବୋଲି କହିବାରୁ ଏଥିରେ ଭିକାରୀ ଚରଣ ଆଦୌ ରାଜି ହେଲେ ନାହିଁ । ପରେ ବିନା କ୍ଷତି ପୂରଣରେ ମକଦ୍ଦମା ନିଷ୍ପତ୍ତି ହେଲା । 'ସମାଜ' ଓ 'ଦୀପିକା' ପାଇଁ ଲେଖୁଥିଲେ ମଧ୍ୟ ଭିକାରୀ ଚରଣଙ୍କର ଶ୍ରୀକୃଷ୍ଣ ମହାପାତ୍ରଙ୍କ ସହିତ ସଂପର୍କ ଭଲ ଥିଲା । ସଂପାଦକ ବିଶ୍ୱନାଥ କର କବିତା ଦୁଇଟିର ପ୍ରକାଶନ ପରେ ହିଁ ଅସଲ ମର୍ମ ଜାଣି ପାରିଥିଲେ ।

## କୁଟୀରଶିଳ୍ପର କୋଟିଙ୍କମ

ଭିକାରୀ ଚରଣଙ୍କ ଜୀବନ ଥିଲା ଜଣେ ଗବେଷକଙ୍କର ଜୀବନ । ଜୀବନ ସାରା ସେ ନୂଆ କାମ ନୂଆ ଜିନିଷ ଖୋଜିବାରେ ବିନିଯୋଗ କରିଛନ୍ତି । ନୂଆ ଜିନିଷ ବାହାର କରିବା ସହିତ ତଳିଆ ଶ୍ରେଣୀର ଲୋକ, ଅନାଥ, ବିଧବାମାନଙ୍କୁ

ଆତ୍ମନିର୍ଭରଶୀଳ କରାଇବା ତାଙ୍କର ମୂଳଚିନ୍ତା ଥିଲା । ଗାଁ ମାଟି, ଗାଁ ଲୋକ ତଥା ଓଡ଼ିଶାର ଜନଜୀବନକୁ ସେ ତନ୍ନ ତନ୍ନ କରି ନିରୀକ୍ଷଣ କରିଥିଲେ । ଦେଶର ଉନ୍ନତି ପାଇଁ ତଳିଆ ଶ୍ରେଣୀର ଉତ୍‌ଥାନ ହିଁ ତାଙ୍କର ମୂଳଲକ୍ଷ୍ୟ ଥିଲା । ଲୋକଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ନ ହେଲେ ଜାତୀୟ ଜୀବନର ବିକାଶ ସମ୍ଭବ ହୋଇ ପାରିବ ନାହିଁ । ଓଡ଼ିଶାର ସାଧାରଣ ଆର୍ଥିକ ଅବସ୍ଥା ଦୃଷ୍ଟିରୁ ବୃହତ୍‌ଶିଳ୍ପ ପ୍ରତିଷ୍ଠା ସମ୍ଭବ ନୁହେଁ । ପୁଣି ଶିଳ୍ପବାଣିଜ୍ୟର ବିକାଶ ଜାତିପାଇଁ ନିତାନ୍ତ ଆବଶ୍ୟକ । ସେ ସମ୍ପର୍କରେ ଜାତୀୟ ଗୌରବ ମଧୁସୂଦନ ପ୍ରଥମେ ଚିନ୍ତା କରିଥିଲେ । ଭିକାରୀ ଚରଣ ମଧୁବାବୁଙ୍କର ପ୍ରତ୍ୟକ୍ଷ ପ୍ରେରଣା ଲାଭ କରିଥିଲେ । ନଷ୍ଟଦ୍ରବ୍ୟ, ସାଧାରଣ ଜିନିଷପତ୍ର, ପରିତ୍ୟକ୍ତ ଜିନିଷରୁ ନୂତନ ଓ ଦରକାରୀ ଜିନିଷ ପ୍ରସ୍ତୁତ କରିବା ପାଇଁ ସେ ଜୀବନସାରା ଗବେଷଣା କରି ଆସୁଥିଲେ । ମଧୁବାବୁଙ୍କ ଶିଳ୍ପନୀତି ଓ ଭିକାରୀ ଚରଣଙ୍କ ଶିଳ୍ପନୀତିରେ କେତେକ ମୌଳିକ ତଫାତ ଥିଲା । ମଧୁସୂଦନ ଅସଙ୍ଗଠିତ ଶିଳ୍ପୀମାନଙ୍କୁ ସଙ୍ଗଠିତ କରି ଯଥେଷ୍ଟ ପୁଞ୍ଜି ବିନିଯୋଗ କରି ଶିଳ୍ପ ପ୍ରତିଷ୍ଠା ପାଇଁ ଉଦ୍ୟମ କରିଥିଲେ । ଭିକାରୀ-ଚରଣ ସାମାନ୍ୟ ପୁଞ୍ଜିରେ ବା ଆଦୌ ପୁଞ୍ଜି ନ ଖଟାଇ କୁଟୀର ଶିଳ୍ପର ବିକାଶ ମାଧ୍ୟମରେ ଲୋକମାନଙ୍କର ଆର୍ଥିକ ବିକାଶ ବିଷୟରେ ଚିନ୍ତା କରୁଥିଲେ । ଭିକାରୀ ଚରଣଙ୍କ ଜୀବନର ସର୍ବଶ୍ରେଷ୍ଠ ଅବଦାନ ହେଲା କୁଟୀର ଶିଳ୍ପ । ଯେଉଁ ହାତକାମ ଓ କୁଟୀରଶିଳ୍ପକୁ ନେଇ ଜାତିର ଜନକ ବାପୁଜୀ ଭାରତବର୍ଷରେ ଜାତୀୟ ଜାଗରଣ ଅଣାଇ ପାରିଥିଲେ, ତାଙ୍କ ବହୁ ପୂର୍ବରୁ ଏହି ଓଡ଼ିଆ ମାଟିର ପୁଅଟିଏ କେତେ ଯେ ଚିନ୍ତା ନ କରିଛନ୍ତି ତାହା ମୂଲ୍ୟାୟନ କରିବା କଷ୍ଟ । ଆଜି ଆମେ ଯେଉଁ କୁଟୀରଶିଳ୍ପକୁ ନେଇ ସାରା ପୃଥିବୀ ବଜାରରେ ଡିଣ୍ଡିମ ପିଟୁଛୁ; ସେଇ କୁଟୀରଶିଳ୍ପ ଓ ତା'ର ଶିଳ୍ପୀ ଯେ ଦିନେ ଅନାଦରରେ ଝଡ଼ିଗଲେ, ତାର କେହି ହିସାବ ରଖିନାହୁ । ପୁଅର କଟେଜ ଇଣ୍ଡଷ୍ଟ୍ରୀ ଯେ ଅପାଙ୍‌କ୍ତେୟ ହୋଇ ଏବେ ବି କଟକ ସହରର ଛାତି ଉପରେ ପଡ଼ିଛି ତାହାହିଁ ଦୁଃଖର ବିଷୟ ।

ଭିକାରୀ ଚରଣଙ୍କ ପୂର୍ବରୁ ଓଡ଼ିଶାରେ 'ଏଣ୍ଡି' ଚାଷର କୌଣସି ବ୍ୟବସ୍ଥା ନଥିଲା । ସେ ଦେଖିଲେ ଯଦି ଏଣ୍ଡିପୋକ ଆଣି ଘରେ ଘରେ ରଖାଇ ପାରନ୍ତେ, ତାହାହେଲେ ସେଥିରୁ ଯାହା ମିଳିବ ତହିଁରେ ଗାଁ ଗଣ୍ଡାର ବିଧବା, ନିରାଶ୍ରୟା ତଥା ଗରିବ ଲୋକମାନେ କିଛି କିଛି ଅର୍ଥ ଉପାର୍ଜନ କରିପାରନ୍ତେ । ଏଣୁ ଭିକାରୀ ଚରଣ ବିହାର-ଓଡ଼ିଶା ସରକାରଙ୍କ ସହିତ ଯୋଗାଯୋଗ କରି ୧୯୨୫ ମସିହାରେ ଓଡ଼ିଶାକୁ ଏଣ୍ଡିପୋକ ଅଣାଇ ତାଙ୍କ ନିଜ କଚେରୀ ଘରୁ ସବୁ ଆଇନ ବହିପତ୍ର ବାହାର କରି ଏଣ୍ଡିପୋକ ପାଳିବାକୁ ଶିକ୍ଷାଦେବା ଆରମ୍ଭ କଲେ । ସେ ସମୟରେ

ଭାଗଲପୁର ସିଲ୍କ ଇନ୍‌ଷ୍ଟିଚ୍ୟୁଟର ସୁପରିନ୍‌ଟେଣ୍ଡେଣ୍ଟ ଶ୍ରୀ ମନ୍ମଥନାଥ ଦେ ବିଭିନ୍ନ ସମୟରେ କଟକ ଆସି ଭିକାରୀ ବାବୁଙ୍କ ଘରେ ରହି, ତାଙ୍କ ସଙ୍ଗରେ ମଫସଲରେ ବୁଲାବୁଲି କରି ଏହି ଚାଷ ପ୍ରଚାର କରିବାକୁ ଲାଗିଲେ । କ୍ରମେ ଓଡ଼ିଶାର ଗ୍ରାମେ ଗ୍ରାମେ ବହୁ ସଂଖ୍ୟାରେ ଲୋକ ଘରେ ଏଣ୍ଡିପୋକ ରଖି ସୂତା କାଟିବାକୁ ଲାଗିଲେ । ଭିକାରୀ ଚରଣ ଦୁଇଖଣ୍ଡ ତନ୍ତ ରଖି ସେ ସମୟର ଉଇଭିଂ ସୁପରଭାଇଜର ଶ୍ରୀସୁବାରାଓ ଓ ଶ୍ରୀ ଗଙ୍ଗାଧର ଦାସଙ୍କ ସହାୟତାରେ ଲୁଗାବୁଣା ଓ ଚଦର ତିଆରି କରାଇଲେ । ଏ କାମରେ ସରକାରଙ୍କ ତରଫରୁ ନିଯୁକ୍ତି ପାଇ ବାଞ୍ଛାନିଧି ଘଡ଼ାଇ ନାମକ ବ୍ୟକ୍ତି ଲୁଗାବୁଣା ଲୋକମାନଙ୍କୁ ଶିଖାଇଲେ । କ୍ରମେ ଓଡ଼ିଶାର ଗ୍ରାମାଞ୍ଚଳରେ ଲୁଗାବୁଣାର ଆଦର ବଢ଼ିବାରୁ ଓଡ଼ିଶାରୁ କେତେକ ଲୋକଙ୍କୁ ଭାଗଲପୁର ପଠାଇ ଏଣ୍ଡିଚାଷ ଓ ଲୁଗାବୁଣା ସଂପର୍କରେ ତାଲିମ୍ ପ୍ରଦାନର ବ୍ୟବସ୍ଥା କରାଇଲେ ।

୧୯୨୬ ମସିହା ବେଳକୁ ସେ ଉତ୍କଳ ଦୀପିକାର ସଂପାଦନା ସହିତ ସଂପୃକ୍ତ ଥାଆନ୍ତି । ଖରାଦିନେ ସକାଳୁଆ କଚେରୀ ତା' ପରେ ପ୍ରେସ୍ କାମ ଓ ଦି' ପହର ଅବସର ସମୟରେ ସେ କୁଟୀରଶିଳ୍ପ ସଂପର୍କରେ ନାନା କଥା ଚିନ୍ତା କରନ୍ତି । ଖରାଦିନ ଖରାବେଳେ ସମସ୍ତେ ବିଶ୍ରାମ ନେଉଥିବାବେଳେ ଭିକାରୀ ଚରଣ ବସି କବିତା ଲେଖନ୍ତି, କଣ୍ଢେଇ ଗଢ଼ନ୍ତି । କନା କାଗଜରେ ନୂଆ ଧରଣର କଣ୍ଢେଇ ତିଆରି କରିବାର କୌଶଳ ବାହାର କରନ୍ତି । ନିଜର ପିଲାମାନଙ୍କ ସାହାଯ୍ୟରେ ହିଁ ସେ ଏହି କୌଶଳ ସବୁର ପ୍ରୟୋଗ ଆରମ୍ଭ କରନ୍ତି ।

କନା କାଗଜକୁ ଗୁଡ଼ାଇ ଗୁଡ଼ାଇ କଣ୍ଢେଇ କରିବାଠାରୁ ଆରମ୍ଭ କରି କାଗଜକୁ ଭିଜାଇ ସେଥିରୁ ମଣ୍ଡ ପ୍ରସ୍ତୁତ କରି ଛାଞ୍ଚରେ ପକାଇ ନୂଆ ଧରଣର କଣ୍ଢେଇ କରିବାର କୌଶଳ ଭିକାରୀ ଚରଣ ଆରମ୍ଭ କରିଥିଲେ । ୧୯୨୬ ମସିହାର ଶେଷ ଭାଗକୁ ତାଙ୍କ ଘରର ପଛ ପଟରେ ଗୋଟିଏ ଘର ତିଆରି କରି ଭିକାରୀ ଚରଣ କଣ୍ଢେଇ ଶିଳ୍ପ ତାଲିମ କେନ୍ଦ୍ର ଆରମ୍ଭ କଲେ ଓ ପୁଅର ଇଣ୍ଡଷ୍ଟ୍ରି କଟେଜର ଶିଳ୍ପଶିକ୍ଷାକେନ୍ଦ୍ର ସ୍ଥାପନ କଲେ । ଏହା କ୍ରମେ ସରକାରୀ ସ୍ୱୀକୃତି ଲାଭକରି ବହୁ ଲୋକଙ୍କୁ ତାଲିମ ପ୍ରଦାନରେ ସାହାଯ୍ୟ କଲା । ଏସବୁ କାମରେ କିଛି କିଛି ଆୟ ହେଉଥିଲା । ଯେଉଁମାନେ ଏଥିରେ ନିଯୁକ୍ତି ପାଇଥାନ୍ତି ସେହି ଆୟରୁ ସେମାନଙ୍କୁ କିଛି ଅର୍ଥ ଦେବାପରେ ଆଉ ଯାହା ରହେ ସବୁ ସେହି କାରଖାନାରେ ବିନିଯୋଗ କରାଯାଉଥିଲା । କେଉଁ କେଉଁ ଜିନିଷ ବିନା ମୂଳଧନରେ ପ୍ରସ୍ତୁତ ହୋଇ ପାରିବ ତାର ସେ ସଂଧାନ କରୁଥିଲେ ।

ପୁଅର ଇଣ୍ଟଷ୍ଟ୍ରି କଟେଜ କ୍ରମେ କ୍ରମେ ପ୍ରସାର ଲାଭକଲା । ଅନାବନା ଘାସ ଠାରୁ ଆରମ୍ଭ କରି ଗାଁ ଗହଳରେ ଦେଖାଦେଉଥିବା ସାଧାରଣ ଜିନିଷକୁ କାମରେ ଲଗାଇବାର ପଦ୍ଧତି ଭିକାରୀ ଚରଣ ବାହାର କଲେ । ଗାଁ ଗହଳରେ ପରମ୍ପରା କ୍ରମେ ଜାତିଆଣ ବ୍ୟବସାୟ ଭାବରେ ଗ୍ରହଣ କରାଯାଉଥିବା ଅନେକ କୁଟୀରଶିଳ୍ପ ଉନ୍ନତମାନର କରାଇ ସବୁ ଶ୍ରେଣୀର ଲୋକଙ୍କୁ ଶିକ୍ଷା ଦିଆଗଲା । ତିନି/ଚାରି ବର୍ଷ ମଧ୍ୟରେ ଏହି କର୍ମଧାରା ବ୍ୟାପକ ଅଞ୍ଚଳରେ ପ୍ରସାର ଲାଭ କଲା । ବିହାର ଓଡ଼ିଶା ସରକାର ଏସବୁ ଜନ କଲ୍ୟାଣ କାମ ପାଇଁ ଭିକାରୀ ଚରଣଙ୍କୁ ୧୯୨୮ ମସିହାରେ ରାୟସାହେବ ଉପାଧି ପ୍ରଦାନ କଲେ ।

ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ୧୯୩୪ ସାଲରେ ମୟୂରଭଞ୍ଜର ମହାରାଜା ତାଙ୍କ ଷ୍ଟେଟକୁ ଭିକାରୀ ଚରଣଙ୍କୁ ନେଇଗଲେ । ଦୁଇବର୍ଷ ପାଇଁ ଚୁକ୍ତିବଦ୍ଧ ହେବା ସମୟରେ ଭିକାରୀ ଚରଣ ମହାରାଜାଙ୍କ ସହିତ କଥାବାର୍ତ୍ତା ହୋଇଥିଲେ ଯେ ମୟୂରଭଞ୍ଜ ସହିତ ତାଙ୍କର ପୂର୍ବ ସଂପର୍କ ଯୋଗୁ ସେ ବାରିପଦା ଯିବାପାଇଁ ରାଜି ଅଛନ୍ତି, ମାତ୍ର ତାଙ୍କର ନିଜର କିଛି କାର୍ଯ୍ୟ ଥିବାରୁ ସେ ପନ୍ଦର ଦିନ ବାରିପଦାରେ ରହିବେ ଓ ପନ୍ଦରଦିନ କଟକରେ ରହିବେ । ଏହି ଚୁକ୍ତି ହେବା ସମୟରେ ମିଷ୍ଟର ଦାସ(ମଧୁବାବୁ) କଟକରେ ନଥାନ୍ତି । ମିଷ୍ଟର ଦାସ କଟକ ଫେରି, ଭିକାରୀ ଚରଣ ବାରିପଦାକୁ ଚାକିରି କରିବାକୁ ଯାଇଛନ୍ତି ଶୁଣି ଖୁବ୍ ରାଗିଯାଇ ଚିଠି ଲେଖିଲେ- ''ଭିକାରୀ, ଶୁଣି ଦୁଃଖିତ ହେଲି ତୁ ଏ ଦିନେ ଚାକିରି କରିବାକୁ ଯାଇଛୁ ।'' ଚିଠିପାଇ ଭିକାରୀ ଚରଣ ସଙ୍ଗେ ସଙ୍ଗେ ମହାରାଜାଙ୍କୁ କହି କଟକ ଆସି ସବୁ ବିଷୟ ବୁଢ଼ା ମିଷ୍ଟର ଦାସଙ୍କୁ ବୁଝାଇ କହିବାରୁ ଅବସ୍ଥା ଶାନ୍ତ ହେଲା । ବାରିପଦାରେ ଦୁଇବର୍ଷ ରହଣୀକାଳ ମଧ୍ୟରେ ସେ କୁଟୀରଶିଳ୍ପ, ପ୍ରାଥମିକ ଶିକ୍ଷା, ସହଯୋଗ ସମିତି, ପଶୁପାଳନ ଓ ପଶୁଚିକିତ୍ସା ସଂପର୍କରେ ନାନା ପରିବର୍ତ୍ତନ ଆଣିଥିଲେ ।

ବାରିପଦାରୁ ଫେରି ଭିକାରୀ ଚରଣ କଟକରେ ଟେଲରିଂ ଶିକ୍ଷା ପ୍ରଦାନର ବ୍ୟବସ୍ଥା କଲେ । ସେ ସମୟର ଲାଟ୍ ସାହେବ ଓ ତାଙ୍କ ସ୍ତ୍ରୀ ଲେଡ଼ି ହବାକ ଏହି ସଂସ୍ଥାକୁ ଗୋଟିଏ ସିଲାଇ ମେସିନ୍ ଦାନ କରିଥିଲେ । ସିଲାଇ ଶିକ୍ଷା ଆରମ୍ଭ ହେଲା ମାତ୍ର ତା'ପାଇଁ ଯଥେଷ୍ଟ କାମ ଦରକାର । ଏଣୁ ଭିକାରୀ ଚରଣଙ୍କ ସାନପୁଅ ରଘୁନାଥ ଅନୁଗୁଳ ଯାଇ ଫରେଷ୍ଟ ଗାର୍ଡ଼ମାନଙ୍କ ପାଇଁ ଗୋଡ଼ରେ ଲାଗୁଥିବା ପଟି ଓ ପଗଡ଼ିରେ ଲାଗୁଥିବା ଫ୍ରିଲର ପାଇଁ ଅର୍ଡର ଆଣିଲେ । ଆଗରୁ ଏସବୁ ଜିନିଷ

କଲିକତା ବା ମାନ୍ଦ୍ରାସରୁ ଆସୁଥିଲା । ସେହି ପଟି ଓ ଫ୍ରିଜର ବୁଣିବା ପାଇଁ ଉଇଭିଂ ସେକ୍‌ସନରେ ଜଣେ ତନ୍ତୀ ପିଲା ଓ ଜଣେ ବ୍ରାହ୍ମଣ ପିଲା ନିଯୁକ୍ତି ପାଇଥିଲେ । ଜିନିଷ ସୁନ୍ଦର ଓ ମଜବୁତ୍ ହେବାରୁ ୧୯୪୦ ମସିହାରେ ଫରେଷ୍ଟ ଡିପାର୍ଟମେଣ୍ଟ ଓ ପୋଲିସ୍ ଡିପାର୍ଟମେଣ୍ଟରୁ ପୋଷାକପତ୍ର ପାଇଁ ଅର୍ଡର ମିଳିଲା । ସେ ସମୟକୁ ଓଡ଼ିଶାର ଏସବୁ କାମ ନୂଆ । ଏହାପରେ ଅନୁଷ୍ଠାନରେ ବେତ, ବାଉଁଶ ଓ ଅନ୍ୟାନ୍ୟ ଘରକରଣା ଜିନିଷ ତିଆରି ଆରମ୍ଭ କରାଗଲା । କାମ କ୍ରମେ ବଢ଼ି ବଢ଼ି ଚାଲିଲା ।

୧୯୪୩ ମସିହାରେ ଭିକାରୀ ଚରଣ ଚଉନଖା ଷ୍ଟେଟର ଇଣ୍ଡଷ୍ଟ୍ରିଆଲ ଆଡ଼ଭାଇଜର ରୂପେ କଟକରେ ରହି କାର୍ଯ୍ୟ କଲେ । ସେତେବେଳେ ପାଟନା-କଳାହାଣ୍ଡି-ବଉଦ-ସୋନପୁର ଷ୍ଟେଟକୁ ମିଶାଇ ଚଉନଖା ଷ୍ଟେଟ କୁହାଯାଉଥିଲା । ଏହି ସମୟରେ ତାଙ୍କ ବଡ଼ପୁଅ ବୈଦ୍ୟନାଥ ରିଲିଫ୍ ମ୍ୟାପ କାମ ଓ କଣ୍ଟେଇ ବିଭାଗ ବୁଝାବୁଝି କରୁଥିଲେ । ସାନ ପୁଅ ରଘୁନାଥ ଟେଲରିଂ ସେକ୍‌ସନର ଦାୟିତ୍ୱ ନେଇଥିଲେ ।

୧୯୪୬ ସାଲରେ ଦଶଟି ଗ୍ରାମରେ ଦଶଟି କ୍ରାଫ୍‌ଟ ସ୍କୁଲ ସରକାରଙ୍କ ତରଫରୁ ଖୋଲାଗଲା । ଭିକାରୀ ଚରଣ ସେ ସବୁର ଅନରାରୀ ଅର୍ଗାନାଇଜର ଭାବରେ କାମ କଲେ । ଏ ସବୁର କେନ୍ଦ୍ର କାର୍ଯ୍ୟାଳୟ ଭିକାରୀ ଚରଣଙ୍କ କଟକର ଶିଳ୍ପକେନ୍ଦ୍ର ଘରେ ଅନୁଷ୍ଠିତ ହେଉଥିଲା । ମଝିରେ ମଝିରେ ଭିକାରୀ ଚରଣ ନିଜ ଖର୍ଚ୍ଚରେ ଯାଇ ବିଭିନ୍ନ କେନ୍ଦ୍ର ଦେଖି ଆସୁଥିଲେ ଓ ଶିକ୍ଷକମାନେ ପ୍ରତି ମାସରେ ସେ କେନ୍ଦ୍ରର କାମ ସବୁ ଆଣି ଦେଖାଇ ଯାଉଥିଲେ । ଭିକାରୀ ଚରଣ ସେମାନଙ୍କୁ ନୂଆ ନୂଆ କାମ ଶିଖାଇବା ସଙ୍ଗେ ସଙ୍ଗେ ପରାମର୍ଶ ଦେଉଥିଲେ । ବର୍ଷକ ମଧ୍ୟରେ ଦୁଇ ହଜାର ଲୋକ ବିଭିନ୍ନ କେନ୍ଦ୍ରରେ ତାଲିମ ନେଇ ନିଜ ନିଜ ଘରେ କାମ କରିବାକୁ ଆରମ୍ଭ କଲେ । ତମପଡ଼ା ଓ ବାଣପୁରର ବେତକାମ ଏବଂ ବାଉଁଶକାମ ବ୍ରାହ୍ମଣ କରଣ ଘରର ଝିଅ ବୋହୂମାନେ ଶିଳ୍ପକେନ୍ଦ୍ରମାନଙ୍କରେ ରହି ଶିକ୍ଷା କଲେ ।

୧୯୪୬ ମସିହାରେ ଭାରତ ସରକାର ପୁଅର ଇଣ୍ଡଷ୍ଟ୍ରି କଟେଜର କାମ ଦେଖି ଏକସ୍ ସର୍ଭିସମ୍ୟାନ ଟ୍ରେନିଂ ପାଇଁ ଏ ଅନୁଷ୍ଠାନକୁ ମନୋନୀତ କରି ଟ୍ରେନିଂ ଆରମ୍ଭ କରାଇ ସମସ୍ତ ଖର୍ଚ୍ଚ ଚଳାଉଥିଲେ । ସନ ୧୯୫୦ରେ ଆଲେଟ୍ ସିଭିଲିଆନ ଟ୍ରେନିଂ ସ୍କିମ୍ ପ୍ରଣୟନ କରି ଟେଲରିଂ, ବୁକ୍ ବାଇଣ୍ଡିଂ ଓ ଦରି ଗାଲିଚା ଉଇଭିଂ ସେକସନମାନଙ୍କରେ ଶିକ୍ଷକ ନିଯୁକ୍ତି କରାଇ ଏହାକୁ ଇଣ୍ଡିଷ୍ଟ୍ରିଆଲ ଟ୍ରେନିଂ ସେଣ୍ଟର (ଭୋକେସନାଲ) ନାମିତ କରାଇ ପରିଚାଳନା କଲେ । ସନ ୧୯୬୦ ମସିହା

ପର୍ଯ୍ୟନ୍ତ ସରକାର ଏହାର ୬୦ ଭାଗ ଖର୍ଚ୍ଚ ବହନ କରୁଥିଲେ । ଭିକାରୀ ଚରଣଙ୍କ ପରଲୋକ ଗମନ ପରେ ଏ ଆଇ.ଟି.ଆଇ. ଖପୁରିଆକୁ ସ୍ଥାନାନ୍ତରିତ ହେଲା ।

ଭିକାରୀ ଚରଣଙ୍କ କର୍ମଧାରାକୁ ବିଚାରକରି ଇଂରେଜ ସରକାର ୧୯୨୮ ମସିହାରେ ରାୟ ସାହେବ, ୧୯୩୭ ମସିହାରେ ରାୟ ବାହାଦୁର, ୧୯୪୬ ମସିହାରେ କାଇଜର-ଇ-ହିନ୍ଦ୍ ଉପାଧି ପ୍ରଦାନ କରିଥିଲେ । ଭାରତ ସ୍ୱାଧୀନତା ଲାଭ ପରେ ତାଙ୍କର ସାହିତ୍ୟ ପ୍ରତି ଅବଦାନକୁ ସମ୍ମାନ ଜଣାଇ ଉତ୍କଳ ବିଶ୍ୱବିଦ୍ୟାଳୟ ୧୯୫୮ ମସିହାରେ ସମ୍ମାନ ସୂଚକ ଡକ୍ଟରେଟ୍ ଉପାଧି ପ୍ରଦାନ କରିଥିଲେ । ସନ ୧୯୬୦ ମସିହାରେ ଉତ୍କଳ ସାହିତ୍ୟ ସମାଜ ତରଫରୁ ତାଙ୍କୁ ସମ୍ବର୍ଦ୍ଧନା ପ୍ରଦାନ କରାଯାଇଥିଲା ।

# ଦ୍ୱିତୀୟ ଭାଗ

# ଭିକାରୀଚରଣଙ୍କ ଦୃଷ୍ଟିବଳୟ

ଜୀବର ଭଲ ମନ୍ଦ ବାଣୀ
ମରଣ କାଳେ ତାହା ଜାଣି ॥

ଉତ୍କଳର ଭିକାରୀ ଚରଣ ପଟ୍ଟନାୟକଙ୍କ ଦେହାବସାନପରେ ପରେ ସମସାମୟିକ ସମ୍ବାଦପତ୍ର, ପତ୍ରପତ୍ରିକା ଓ ଜନସାଧାରଣ ଯେଉଁ ପ୍ରକାର ଟିପ୍ପଣୀ ପ୍ରକାଶ କରିଥିଲେ, ସେଥିରୁ ତାଙ୍କର ଲୋକପ୍ରିୟତା ଓ ବହୁମୁଖୀ ଦୃଷ୍ଟିବଳୟର ସୂଚନା ମିଳେ । ସନ ୧୯୬୨ ମସିହା ଜାନୁୟାରୀ ମାସ ୨୩ ତାରିଖ ଭୋର ୫.୦୦ ବେଳେ ଏହି ମହାନ କର୍ମୀଙ୍କର ସ୍ୱର୍ଗବାସ ହେଲା । ସେ ଦିନର ''ସମାଜ'', ''ପ୍ରଜାତନ୍ତ୍ର'' ଓ ''କଳିଙ୍ଗ'' ପ୍ରଭୃତି ପତ୍ରିକାର ପ୍ରଥମ ପୃଷ୍ଠାରେ ଭିକାରୀ ଚରଣଙ୍କ ଶେଷ ଶୟନର ଫଟୋଚିତ୍ର ସହିତ, ତାଙ୍କର ମୃତ୍ୟୁ ସମ୍ବାଦ ବଡ଼ ଅକ୍ଷରରେ ପ୍ରକାଶ ପାଇଥିଲା ।

''କୁଟୀରଶିଳ୍ପ ସ୍ରଷ୍ଟା, ବୟୋବୃଦ୍ଧ, ଭିକାରୀ ବାବୁଙ୍କ ପରଲୋକ ।'' ଶିକ୍ଷାର ପ୍ରସାର ଲାଗି ଆଜୀବନ ସାଧକ, ସାହିତ୍ୟିକ, ଆଇନଜୀବୀଙ୍କର ୮୫ ବର୍ଷ ବୟସରେ ଦେହାବସାନ । ଶେଷକୃତ୍ୟରେ କଟକର ବିଶିଷ୍ଟ ବ୍ୟକ୍ତିମାନଙ୍କର ଯୋଗଦାନ ଏବଂ ଶ୍ରଦ୍ଧାଞ୍ଜଳି ଅର୍ପଣ ।'' (୨୪.୦୧.୬୨)

ସେ ଦିନର ବିଶେଷ ଖବର ଏହିପରି ଥିଲା ।

''ମୃତ୍ୟୁ ପୂର୍ବରୁ ସେ ବହୁଦିନ ଧରି ବାର୍ଦ୍ଧକ୍ୟ ଓ ଆନୁଷଙ୍ଗିକ ରୋଗରେ ଆକ୍ରାନ୍ତ ହୋଇ ତାଙ୍କ ଟାଉନହଲ୍ ରୋଡ୍‌ସ୍ଥ'ବାସ ଭବନରେ ଶଯ୍ୟାଶାୟୀ ଥିଲେ । ତାଙ୍କ ମୃତ୍ୟୁ ଖବର ପାଇ ଉତ୍କଳର ଆର୍ତ୍ତବଲ୍ଲଭ ମହାନ୍ତି, ସ୍ୱାମୀ ବିଚିତ୍ରାନନ୍ଦ ଦାସ, ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ, ସମାଜ ସଂପାଦକ ଶ୍ରୀ ରାଧାନାଥ ରଥ, ପ୍ରଜାତନ୍ତ୍ର ସଂପାଦକ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ, ଶ୍ରୀପି.ସି. ମହାନ୍ତି, ଶ୍ରୀ ବନବିହାରୀ ମହାନ୍ତି, ଶ୍ରୀ ବାଳକୃଷ୍ଣ ପଟ୍ଟନାୟକ, ଉତ୍କଳ ସାହିତ୍ୟ ସମାଜ ସଂପାଦକ ଶ୍ରୀ ବିଚିତ୍ରାନନ୍ଦ କର, ମୋହିନୀମୋହନ ଦାସ, ଦିବ୍ୟସିଂହ ଦାସ, ଅଧାପକ ଶ୍ରୀରାମଚନ୍ଦ୍ର ଦାଶ, ନଗେନ୍ଦ୍ର କୁମାର ବେହୁରିଆ, ତ୍ରୈଲୋକ୍ୟନାଥ ମହାନ୍ତି ପ୍ରମୁଖ ବହୁବ୍ୟକ୍ତି ଯୋଗ ଦେଇଥିଲେ । ସେହିଦିନ ସାଢ଼େ

ଦଶଟା ବେଳେ ନାମ ସଂକୀର୍ତ୍ତନ ସହିତ ଏକ ବିରାଟ ଶୋଭାଯାତ୍ରାରେ ଚୌଧୁରୀ ବଜାର ବାଟ ଦେଇ ସହରର ପ୍ରଧାନ ରାସ୍ତାରେ ନିଆଯାଇ ଖାନ୍‌ନଗର ଶ୍ମଶାନରେ ତାଙ୍କର ଶେଷକୃତ୍ୟ ସଂପନ୍ନ ହୋଇଥିଲା ।

ସମକାଳରେ ଜନ୍ମଲାଭ କରିଥିବା ଓଡ଼ିଶାର ବିଶିଷ୍ଟ ବ୍ୟକ୍ତିତ୍ୱ ପଣ୍ଡିତ ଗୋପବନ୍ଧୁ ଦାସ ଓ ପଲ୍ଲୀକବି ନନ୍ଦକିଶୋର ବଳଙ୍କ ଠାରୁ ଭିକାରୀ ଚରଣଙ୍କ ଦୃଷ୍ଟିଭଙ୍ଗୀ ଭିନ୍ନ ଥିଲା । ଗତାନୁଗତିକ ପନ୍ଥାରେ ନ ଯାଇ ସେ ଏକ ଭିନ୍ନ ବାଟରେ ଗତି କରିଥିଲେ । ସେ ସମୟର ଉତ୍କଳ ପୁରୁଷ ମିଷ୍ଟର ଦାସ (ମଧୁବାବୁ)ଙ୍କର ସେ ଏକାନ୍ତ ଅନୁଗାମୀ ଥିଲେ । ତାଙ୍କ ମାର୍ଗର ପଥିକ ଥିଲେ କିନ୍ତୁ ଚିନ୍ତା ଓ ଚେତନାରେ ଆଉ ଗୋଟିଏ ବାଟ ଧରିଥିଲେ । ତାଙ୍କ ଜୀବନକାଳ ଭିତରେ ଓଡ଼ିଶାର ସ୍ୱତନ୍ତ୍ର ପ୍ରଦେଶ ଗଠନର ଚିନ୍ତା ଓ ଓଡ଼ିଆ ଆନ୍ଦୋଳନ ଭୀଷଣ ଆକାର ଧାରଣ କରିଥିଲା । ସେ ସେଥିପାଇଁ ଅଶ୍ରଦ୍ଧା ପ୍ରଦର୍ଶନ କରିନାହାନ୍ତି । ଓଡ଼ିଶାର ଗୌରବଗାଥା, ଇତିହାସର ଗୁଣକୀର୍ତ୍ତନ କରିଛନ୍ତି । କବିତାରେ ନାଟକରେ ଜାତିର ଉଦ୍‌ବୋଧନୀ ଗୀତିକା ଶୁଣାଇଛନ୍ତି କିନ୍ତୁ ପ୍ରତ୍ୟକ୍ଷ ଆନ୍ଦୋଳନରେ ଭାଗ ନେଇ ନାହାନ୍ତି । ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ ବି ସେ ସମୟର ଏକ ପ୍ରମୁଖ ଘଟଣା । ସାରା ଭାରତରେ ଯେତେବେଳେ ବିଦ୍ରୋହର ନିଆଁ ଜଳି ଉଠିଛି, ସ୍ୱୟଂ ଗାନ୍ଧିଜୀ ଭିକାରୀ ଚରଣଙ୍କ ଶିଳ୍ପ କାରଖାନା ଦେଖି ମନ୍ତବ୍ୟ ଲେଖିଛନ୍ତି, ମାତ୍ର ଭିକାରୀ ଚରଣ ସ୍ୱଦେଶୀ ଆନ୍ଦୋଳନରେ ଭାଗ ନେଇ ନାହାନ୍ତି, ବରଂ ଇଂରେଜ ସରକାରଙ୍କ ଠାରୁ ପଦବୀ ଗ୍ରହଣ କରିଛନ୍ତି । ଅନ୍ୟ ପକ୍ଷରେ ଦେଖିଲେ ବ୍ୟକ୍ତିଗତ ଲାଭ ପାଇଁ ସେ ଇଂରେଜ ସରକାରଙ୍କୁ ତୋଷାମଦ କରି ଲାଭବାନ ହେବାକୁ ଚେଷ୍ଟା କରି ନାହାନ୍ତି ।

ଓଡ଼ିଶାର ଲୋକମାନଙ୍କର ଦାରିଦ୍ର୍ୟ, ଅଭାବ, ଅନଟନ ଓ ବେକାରୀ ସଂପର୍କରେ ସେ ଚିନ୍ତା କରିଛନ୍ତି । ତା'ର ନିରାକରଣ ପାଇଁ ପଦକ୍ଷେପ ଗ୍ରହଣ କରିଛନ୍ତି କିନ୍ତୁ ଗୋପବନ୍ଧୁଙ୍କ ପରି ତତ୍‌କ୍ଷଣାତ୍ ସାହାଯ୍ୟ ଧରି ବନ୍ୟା, ବାତ୍ୟା, ମରୁଡ଼ି ପ୍ରପୀଡ଼ିତ ଲୋକମାନଙ୍କୁ ସାହାଯ୍ୟ କରିବାକୁ ଆଗେଇଯାଇ ନାହାନ୍ତି । ଏସବୁ ଦୃଷ୍ଟିରୁ ବିଚାର କଲେ ଭିକାରୀ ଚରଣଙ୍କ ଦୃଷ୍ଟିଭଙ୍ଗୀରେ ଏକ ଭିନ୍ନ ଲକ୍ଷ୍ୟ ରହିଥିଲା । ଏ ସବୁର ସେ କିଛି ଅଂଶରେ ସ୍ଥାୟୀ ପ୍ରତିକାର ଚାହୁଁଥିଲେ ।

ସେଇ ଭିନ୍ନ ଧରଣର ବ୍ୟକ୍ତିତ୍ୱ ଭିକାରୀ ଚରଣ ଓଡ଼ିଆ ସାହିତ୍ୟରେ ଜଣେ ସ୍ୱନାମଧନ୍ୟ ଲେଖକ, କବି ଓ ନାଟ୍ୟକାର । ତାଙ୍କ ବ୍ୟଙ୍ଗ କବିତାବଳୀ, ଜାତୀୟବାଦୀ କବିତା, ଗୀତି କବିତା ଓ ନାଟକମାନ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସଂପଦ । ତାଙ୍କ

ଉଦ୍‌ଭାବିତ କୁଟୀର ଶିଳ୍ପ ବିଶେଷ କରି ପରିତ୍ୟକ୍ତ ଦ୍ରବ୍ୟରୁ ଶିଳ୍ପ ସମ୍ଭାର ପ୍ରସ୍ତୁତି ଓଡ଼ିଆ ଜନସାଧାରଣଙ୍କ ଆର୍ଥନୀତିକ ଉନ୍ନତିର ପଥ ଉନ୍ମୋଚନ କରିଥିଲା । ସେ ସଂପର୍କରେ ସେ ସଚେତନ ଥିଲେ । ଶିକ୍ଷା ସଂସ୍କାରକ ଭାବରେ ସେ ପ୍ରାଥମିକ ଶିକ୍ଷାରେ ନାନା ପରିବର୍ତ୍ତନ ଆଣି ପିଲାବେଳରୁ କର୍ମାଭିମୁଖୀ ଶିକ୍ଷା ପ୍ରବର୍ତ୍ତନ କରିଥିଲେ । ଶିଶୁମାନଙ୍କ ପାଇଁ ସଂସ୍କାରମୂଳକ ରଚନା, ଜାତୀୟତା ଉଦ୍ଦୀପକ ସଂଗୀତ ସହିତ ଗୋପାଳନ କୁଟୀର ଶିଳ୍ପକୁ ଭିତ୍ତିକରି କର୍ମସଙ୍ଗୀତ ରଚନା କରିଥିଲେ । ଏଥି ସହିତ ସମବାୟ ଆନ୍ଦୋଳନରେ ପ୍ରସାର, ଶକଟ ଚାଳକ ସଂଘ, ପଶୁକଷ୍ଟ ନିବାରଣ ସମିତି, ଆୟୁର୍ବେଦ ବିଦ୍ୟାଳୟ ପରିଚାଳନା ଭଳି ଅନେକ ମୌଳିକ କାର୍ଯ୍ୟ କରି ସନ୍ତୋଷ ଲାଭ କରିଥିଲେ । ଆଇନଜୀବୀ ହୋଇବି ଆଇନ ବ୍ୟବସାୟରେ ମନୋନିବେଶ ନକରି ଜନମଙ୍ଗଳ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ତାଙ୍କର ସ୍ୱପ୍ନ, ସାଧନା ଓ ସଫଳତା ସଂପର୍କରେ ଏଠାରେ ସଂକ୍ଷେପରେ ଆଲୋଚନା କରିବାକୁ ପ୍ରୟାସ କରାଯାଇଛି ।

ଶିଳ୍ପ-ସାହିତ୍ୟିକ ଭିକାରୀ ଚରଣଙ୍କ ସଂପର୍କରେ ପ୍ରଫେସର ଜଗନ୍ନାଥ ମହାନ୍ତି 'ତଗର' ପତ୍ରିକାରେ ଲେଖିଥିଲେ : ''ବୁଢ଼ା ଭିକାରୀଟିଏ ବସିଛି କୁଟୀର ଭିତରେ, ବେତ ଚଉକି ଉପରେ ପଡ଼ିଛି ଛିଣ୍ଡା କନା ତିଆରି କନ୍ଥା । କୁଟୀର ତମାମ ଜମିଛି ଅଲୋଡ଼ା ଦରବର ଭିଡ଼ । ଘାସ, କିଆ ପତର, ବେଣା, କାଇଁଚ, କତା, ସଢ଼େଇ, ଖଜୁରୀପତ୍ର ଆଦି କେତେ ଜିନିଷ, ଯାହାକୁ ଆମେ ଅଳିଆ ଅସନା ବୋଲି ଘୃଣା କରୁ, ଫିଙ୍ଗା ଫୋପଡ଼ା କରୁ କିଂବା ଚୁଲି ମୁହଁରେ ଦେଉ ସେଇ ସବୁକୁ ସେ ଲୋକ ଦେଇଛି ନୂଆ ରୂପ, ନୂଆ ମାନ ମର୍ଯ୍ୟାଦା ଆଉ ଅପୂର୍ବ ଆଦର । ଶୁଖିଲା ନିରସ ଦରବରେ ଯେମିତି ଭରି ଉଠିଛି ଜୀବନ ଓ ରସ । ହାତର କାଉଁରୀ ପରଶରେ ଗଢ଼ା ସେଇ ସବୁ ଜିନିଷ । ଆଧୁନିକ ବିଜ୍ଞାନର କରାମତିରେ ସୃଷ୍ଟି ହେଉଥିବା ଚକଚକିଆ ଦରବ ସାଥୀରେ ଟକ୍କର ଦିଏ । ବିଳାସ ବ୍ୟସନ ଭିତରେ ବଢୁଥିବା ଆଧୁନିକା ନାରୀ ମଧ୍ୟ ହସି ହସି ହାତ ବଢ଼ାଏ ସେଇ ସବୁ ଜିନିଷ ଆଡ଼କୁ ଆଦରରେ, ଲୋଭରେ । ଭିକାରିଟି ପିନ୍ଧିଛି ମୋଟା ଖଦି ଖଣ୍ଡେ, ଗୋଡ଼ରେ ଅଛି ରାସ୍ତା ଦାଡ଼ରେ ଫିଙ୍ଗା ହେଉଥିବା ମଟର ଟାୟାର ଆଉ ନାଳିଆ ଘାସରେ ତିଆରି ଚପଲ ହଳେ । ପାଖରେ ପଡ଼ିଛି ଗୋଛାଏ ଖାତା ଆଉ ଖଣ୍ଡ ଖଣ୍ଡ କାଗଜ । ଆଖିକୁ ଭଲ ଦିଶୁନାହିଁ । ଅନେକ ସମୟରେ ସେଗୁଡ଼ାକ ବୁଢ଼ା ଦରାଣ୍ଡି ହେଉଥିବ । ମନଭିତରେ ଯେତେବେଳେ ଭାବନାର ଲହରୀ ଉଠେ, ସେ କାଠ କଲମଟିଏ ଧରି କ'ଣ କେତେ ଗାରେଇଯାଏ । କେହି ପଢୁ ନ ପଢୁ କିଛି ଯାଏ ଆସେ ନାହିଁ । କେହି ନଜାଣୁ ତାର ଶୋଚନା ନାହିଁ ।

ମନରେ ସ୍ମୃତିର ବିପୁଳ ସମାରୋହ । ପଛରେ ଅତୀତର ଆଶା ନିରାଶା ଜଡ଼ିତ କଥା । ଗାଁ ଗହଳରେ ଭୋକି ଶୋଷି ଓ ଶୋଷିତଙ୍କ ପାଇଁ କିଛି କରିବାକୁ ଯାଇ ସେ ଭିକାରି ବେଶ ସାଜିଛନ୍ତି । (ଡଗର; ଦ୍ୱୟୋବିଂଶ ବର୍ଷ ପ୍ରଥମ ସଂଖ୍ୟା, ପୃ.୩୪)

ନୂଆ କିଛି ଗଢ଼ିଯିବାର, ନୂଆ କିଛି କରିଯିବାର ଭାବନା ହିଁ ଭିକାରୀ ଚରଣଙ୍କୁ ଭିନ୍ନ ପଥର ପଥିକ କରିଥିଲା । ଜାତିର ଉନ୍ନତି ପାଇଁ, ବ୍ୟକ୍ତିର ଆତ୍ମିକ ବିକାଶ ଓ ଆର୍ଥିକ ଉନ୍ନତି ହିଁ ମୂଳପନ୍ଥା ବୋଲି ଭିକାରୀ ଚରଣ ଧରି ନେଇଥିଲେ । ତାଙ୍କର ଏ ପ୍ରକାର ପଦକ୍ଷେପ ସେ ସମୟର ଉଜ୍ଜ୍ୱଳ ବ୍ୟକ୍ତିତ୍ୱ ମିଷ୍ଟର ଦାସ(ମଧୁବାବୁ)ଙ୍କ ପତ୍ରରୁ ସ୍ପଷ୍ଟ ଜଣାପଡ଼େ । ତା ୧୬.୦୬.୧୯୧୭ରେ ମଧୁବାବୁ ଭିକାରୀ ଚରଣଙ୍କୁ ଏକ ପତ୍ର ଲେଖିଥିଲେ :

My Dear Bhikari Babu, Cuttack
16.06.17

I have gone through some of your books and read only portions of some. For want of time I could not go through all. Your books aim at removing some of the evils which have crept into the present social life of Orissa. Their presence accounts for the absence of the virtues of our ancestors and for the assimilation of the virtues of Western life. Viewed from this stand point your authorship has a valuable and timely mission. Your quaint humour has an attraction altogether its own. There is an undercurrent of sarcasm and ridicule in some of your books whcih on the stage ought to prove powerful help to earnest Workers for Social reform. I hope your books sell, but I fear judging from the absence of public life in Orissa the printing costs are paid by you.

I send herewith a small contribution towards the printing cost and I shall thank you to accept it as a sincere expression of my grateful appreciation of your authorship and patriotism.

Believe me,

Yours very Sincerely

M. S. Das

ଏ ପତ୍ରରେ ମଧୁସୂଦନ ଭିକାରୀ ଚରଣଙ୍କର କର୍ମ ସଂପର୍କରେ ସ୍ପଷ୍ଟ ସୂଚନା ପ୍ରଦାନ କରିଛନ୍ତି । ଏଥିରେ ଭିକାରୀ ଚରଣଙ୍କ ଦୃଷ୍ଟିକୋଣ ସହିତ ମିଷ୍ଟର ଦାସଙ୍କ ପୃଷ୍ଟପୋଷକତାର ଚିତ୍ର ରହିଛି । ଅଳସୁଆର ଭାଗ୍ୟ ବୁଡ଼ିଯାଏ । ଆମେ କେବଳ ଇତିହାସର ନମୁନା ନେଇ ବୀର ଓଡ଼ିଆ କର୍ମଠ ଓଡ଼ିଆ କହିଲେ ଜାତିର ଭାଗ୍ୟ ବଦଳିବନି । ଭୋକିଲା ପେଟରେ ଦାନା ଦେବାପାଇଁ, ଫୁଙ୍ଗୁଳା ଦେହରେ ଲୁଗାଖଣ୍ଡେ ପକାଇବା ପାଇଁ, ମଣିଷକୁ ପରିଶ୍ରମ କରିବାକୁ ପଡ଼ିବ । ପରିଶ୍ରମ କେବେ ବୃଥା ଯାଏନାହିଁ । ସେଥିପାଇଁ ଭିକାରୀ ଚରଣ କେବଳ କବିତାରେ ଉପଦେଶ ନ ଦେଇ ବିହାରରୁ ଏଣ୍ଡିପୋକ ଅଣାଇ ଓଡ଼ିଶାରେ ଚାଷ କରାଇବାକୁ ଲାଗିଲେ । ସେ କାହିଁକି ଏଣ୍ଡି ଆଣିଲେ ସେ ସଂପର୍କରେ ନିଜେ ସୂଚନା ଦେଇଛନ୍ତି । କାର୍ପାସ ବସ୍ତ୍ର ଅପେକ୍ଷା ରେଶମ ବସ୍ତ୍ର ଅଧିକ ସ୍ଥାୟୀ ଓ ଅଧିକ ମୂଲ୍ୟବାନ । କପାଚାଷ କୃଷ୍ଣ କାର୍ପାସ ମାଟିରେ ଭଲହୁଏ । ଓଡ଼ିଶାର ମାଟି ଏଥିପାଇଁ ଅଧିକ ଉପଯୁକ୍ତ ନୁହେଁ । ଏଣୁ କପା ଚାଷ ସହିତ ରେଶମ ବସ୍ତ୍ର ଉତ୍ପାଦନ କଲେ ଲୋକେ ଅଧିକ ଲାଭବାନ ହେବେ । ରେଶମ ଚାଷ ବିଭିନ୍ନ ପ୍ରକାର । ଏହା ଏକଜାତୀୟ ପୋକର କୋଷରୁ ତିଆରି । ଓଡ଼ିଶାର ଜଳବାୟୁ ପାଇଁ ଯେଉଁ ବର୍ଗର ରେଶମ ଅଧିକ ଉପଯୋଗୀ ସେ ସଂପର୍କରେ ଭିକାରୀ ଚରଣ ଅନୁସଂଧାନ କରିଥିଲେ । 'ଏଣ୍ଡି' ପୁସ୍ତକରେ ଭିକାରୀ ଚରଣ ଏହିପରି ଉଲ୍ଲେଖ କରିଛନ୍ତି :

''ଭାରତବର୍ଷରେ ଅନେକ ପ୍ରକାର ରେଶମ ଉତ୍ପନ୍ନ ହୁଏ । ଯଥା:- ପାଟ, ମଠା, ମୁଗା, ଏଣ୍ଡି ଇତ୍ୟାଦି । ସେଗୁଡ଼ିକ ଗୋଟିଏ ଗୋଟିଏ ପୋକ ଉତ୍ପନ୍ନ କରନ୍ତି । ପୋକଗୁଡ଼ିକ ଭିନ୍ନ ଭିନ୍ନ ଜାତୀୟ ଏବଂ ସେମାନଙ୍କର ଆହାର ମଧ ଭିନ୍ନ ଭିନ୍ନ ପଦାର୍ଥ । କେତେକ ପୋକ ତୁତ ଗଛର ପତ୍ର ଖାଇ ରେଶମ ପ୍ରସ୍ତୁତ କରନ୍ତି । ସେ ରେଶମକୁ ସାଧାରଣତଃ ପାଟ ବୋଲାଯାଏ । ଏକ ପ୍ରକାର ପୋକ ବରକୋଳି, ଅଶନ, ଅର୍ଜୁନ ପ୍ରଭୃତି ଗଛର ପତ୍ର ଖାଇ ରେଶମ ପ୍ରସ୍ତୁତ କରନ୍ତି । ସେ ରେଶମକୁ ଟସର କୁହାଯାଏ । ଆଉ ଏକ ପ୍ରକାର ପୋକ ସୋମ ଗଛର ପତ୍ରଖାଇ ରେଶମ ପ୍ରସ୍ତୁତ କରନ୍ତି । ତାକୁ ମୁଗା କୁହାଯାଏ । ରେଶମମାନଙ୍କ ମଧ୍ୟରେ ଏହି ସର୍ବୋତ୍କୃଷ୍ଟ ରେଶମର ବର୍ଣ୍ଣ ଈଷତ ହଳଦିଆ । ଆମ୍ଭେମାନେ ଯେଉଁ ରେଶମ କଥା ଏହି ପୁସ୍ତକରେ କହିବାକୁ ଯାଉଅଛୁ ସେ ରେଶମ ଯେଉଁ ପୋକମାନେ ପ୍ରସ୍ତୁତ କରନ୍ତି, ସେମାନେ ଜଡ଼ା ବା ଗବ ପତ୍ର ଖାଇ ରେଶମ ପ୍ରସ୍ତୁତ କରନ୍ତି । ସେମାନଙ୍କର ପ୍ରଧାନ ଖାଦ୍ୟ ଜଡ଼ା (ଏରଣ୍ଡ) ପତ୍ର ଥିବାରୁ ଏରଣ୍ଡର ଅପଭ୍ରଂଶରୁ ଏହି ରେଶମକୁ ଏଣ୍ଡି କୁହାଯାଏ । (ଏଣ୍ଡି, ପୃ.୧)

ଓଡ଼ିଶାର ଜଳବାୟୁ ଏଣ୍ଡି ଚାଷପାଇଁ ଉପଯୁକ୍ତ ଥିବାରୁ ଭିକାରୀ ଚରଣ ଖୁବ୍ ଅଳ୍ପ ଦିନରେ ଏ ସବୁର ପ୍ରସାର କରାଇ ପାରିଥିଲେ । ଭିକାରୀ ଚରଣ ଏଣ୍ଡି ଚାଷକୁ କେବଳ ଗୃହଶିଳ୍ପ ଭାବରେ ନୁହେଁ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଶିକ୍ଷା ପୁସ୍ତକ ଭାବରେ ପ୍ରଚଳନ କରାଇବାକୁ ଚାହିଁଥିଲେ । ଏହି ପୁସ୍ତକର ମୁଖବଂଧରେ ସୂଚନା କ୍ରମରେ ସେସମୟ ଓଡ଼ିଶା ବିଭାଗର ଭାରପ୍ରାପ୍ତ ସ୍କୁଲ ଇନ୍‌ସ୍ପେକ୍ଟର ଶ୍ରୀଯୁକ୍ତ ବି.ମୁଖାର୍ଜି ଲେଖିଥିଲେ ।

I have great pleasure in writing this foreword for the book designated Eri by my friend Rai Sahib Bhikari Charan Pattanayak.

I have taken great care to go through the work with some minuteness and I find that the plan and the matter of the book would be in confermity with the new educational principles and the right spirit of elementary teaching in our primary schools for whcih the department has brought out a new syllabus. I may add that during the course of my inspections as also at conferences of primary teachers and inspecting officers, suggestions given for educational active work have been all incorporated by Rai Sahib. I consider the book to be of great help to teachers who would try to do, in their schools in the form of hand-work and observation training, the teaching of Eri worm.

B. Mukharji
Offg. Inspector of Schools.
Orissa Division.
30.04.29

## ଜାତିର ମୂଳଦୁଆ ମଜଭୁତ ହେଉ

ପାଠ ନ ପଢ଼ିଲେ ଲୋକେ ଆଖି ଥାଉଥାଉ ଅନ୍ଧ ହୋଇ ପଡ଼ନ୍ତି । 'ଅକ୍ଷର' ମଣିଷର ତୃତୀୟ ନୟନ । ସଂସ୍କାରକ ଭିକାରୀ ଚରଣ ବରାବର କହୁଥିଲେ, ଦେଶର ପ୍ରାଥମିକ ଶିକ୍ଷାର ଉନ୍ନତି ନ ହେଲେ ଜାତିର ଉନ୍ନତି ସମ୍ଭବ ନୁହେଁ । ଯେପରି ମୂଳଦୁଆ ମଜଭୁତ ନ ହେଲେ ଘର ଭୁଶୁଡ଼ି ପଡ଼େ, ସେପରି ପ୍ରାଥମିକ ଶିକ୍ଷା ପ୍ରତି

ଧ୍ୟାନ ଦିଆ ନ ଗଲେ ଦେଶର ଶିକ୍ଷା ବ୍ୟବସ୍ଥା ବିପର୍ଯ୍ୟସ୍ତ ହୋଇ ପଡ଼ିବ । ଦେଶର ଜଳବାୟୁ, ଆଞ୍ଚଳିକ ପରିବେଶ, ଆର୍ଥନୀତିକ ଅବସ୍ଥାକୁ ବିଚାର କରି ପ୍ରାଥମିକ ପାଠ୍ୟ ଖସଡ଼ା ସ୍ଥିର କରାଯିବା ଆବଶ୍ୟକ । ପୁଣି ଶିକ୍ଷାର୍ଥୀର ମନକୁ ସୁହାଇବା ପରି ପାଠର ଆବଶ୍ୟକତା ରହିଛି । ଶିଶୁର ଇଚ୍ଛା ପ୍ରତିକୂଳ ଶିକ୍ଷା ତାର ଅନ୍ତର୍ନିହିତ ଗୁଣରାଶିକୁ ବିଚଳିତ କରାଇଦିଏ । ସ୍କୁଲକୁ ଆସିବା ପାଇଁ ପିଲାମାନଙ୍କର ଆଗ୍ରହ ସୃଷ୍ଟି କରାଇବାକୁ ପଡ଼ିବ । ଘୋଡ଼ାକୁ ବାଡ଼େଇ ବାଡ଼େଇ ନଈ ପର୍ଯ୍ୟନ୍ତ ନେଇ ହବ; ଯେବେ ଘୋଡ଼ାର ଆଗ୍ରହ ନଥାଏ ତାକୁ ପାଣି ପିଆଇବ କିଏ ? ସେହିପରି ଛାତ୍ରଛାତ୍ରୀମାଙ୍କର ଆଗ୍ରହ ନଥିଲେ ଆଗ୍ରହ ସୃଷ୍ଟି କରାଇବାକୁ ହେବ ନଚେତ୍ ପ୍ରାଥମିକ ଶିକ୍ଷା ବିପର୍ଯ୍ୟସ୍ତ ହେବ । ଆଜିକାଲି ଯେପରି ପ୍ରାଥମିକ ବିଦ୍ୟାଳୟମାନଙ୍କରେ ପାଠର ବୋଝ ନଦି ଦିଆଯାଉଛି, ଭିକାରୀ ଚରଣ ତାର ସମର୍ଥକ ନଥିଲେ । ହସ ଖେଳ ମଧ୍ୟରେ ପିଲାମନରେ ଶିକ୍ଷାପାଇଁ ଆଗ୍ରହ ସୃଷ୍ଟି କରାଇବାକୁ ସେ ପରାମର୍ଶ ଦେଇଥିଲେ । ଏଥିପାଇଁ ସେ 'ପ୍ରାଥମିକ ଶିକ୍ଷାଦାନ ବିଧି' ନାମରେ ଏକ ପୁସ୍ତକ ରଚନା କରିଥିଲେ । ଏହି ପୁସ୍ତକ ସେତେବେଳେ ଯଥେଷ୍ଟ ଆଦର ପାଇପାରିଥିଲା । ପ୍ରାଥମିକ ଶିକ୍ଷାର ସଂସ୍କାର ନିମନ୍ତେ ବର୍ତ୍ତମାନ ବି ସେ ପୁସ୍ତକର ଉପଯୋଗିତା ରହିଛି । କଟକ ଟ୍ରେନିଂ କଲେଜର ଅଧ୍ୟକ୍ଷ ଶ୍ରୀ ବି. ମୁଖାର୍ଜୀ ଏହାର ମୁଖବନ୍ଧରେ ଲେଖିଥିଲେ-

Office of the Principal<br>Cuttack Traning College<br>Cuttack, the 1st September, 1931.

My Dear Rai Saheb,

Thanks for your letter. I have carefully persued your Class I Scheme of Primary Education for the State. I notice that you have been good enough to incorporate all the points that emanated out of our discussion on the matter. I feel that while there can be nothing final in education in respect of schemes and syllabusess, howsoever designed, what you have been able to chalk out for work in the first year of the primary system in your state, should offer exactly what is meant by

Training for life. Your scheme is undoubtedly a practical and constructive programme for putting beginners in the way of life and not Shunting them to the dead siding of mere bookish instruction. The features of attractiveness, joyousness in work, purposive and occupational work, development of the powers of observation and work with the hands have been kept in the fore-front without at all neglecting or sacrificing the value of the traditional 3 R's which, if the true form and spirit of your scheme be kept alive, will come in the play fashion as a byproduct though, surpassing in value what the traditional old fashioned school get by making a fetish of mere teaching and teaching.

I wish your scheme all success.

Yours sincerely

B. Mukherjee.

ପ୍ରାଥମିକ ଶିକ୍ଷା ବ୍ୟବସ୍ଥା ସଂପର୍କରେ ରାୟବାହାଦୁର ଭିକାରୀ ଚରଣଙ୍କ ନିଜସ୍ୱ ମତ ଏଠାରେ ପ୍ରଣିଧାନ ଯୋଗ୍ୟ । "ଶିକ୍ଷାଦାନ ନିମନ୍ତେ ନାନା ପ୍ରକାର ସ୍କୁଲ ଅଛି ଯଥାଃ- ପ୍ରାଇମେରୀ, ସେକେଣ୍ଡାରୀ, ଉଚ୍ଚବିଦ୍ୟାଳୟ, କଲେଜ ଇତ୍ୟାଦି । ସ୍କୁଲ କଥାଟି କହିଲେ ଭାବିବା ଉଚିତ ଯେ (୧) ଅଭିଭାବକମାନେ କାହିଁକି ତାଙ୍କ ପିଲାକୁ ସ୍କୁଲକୁ ପଠାନ୍ତି ? (୨) ପିଲାମାନେ ସ୍କୁଲକୁ ଆସି କ'ଣ ଶିଖନ୍ତି ?

ଶିକ୍ଷାର ଉଦ୍ଦେଶ୍ୟ ଜ୍ଞାନଲାଭ । କେବଳ ଲେଖି ଶିଖିଲେ କି ପଢ଼ି ଶିଖିଲେ ଜ୍ଞାନଲାଭ ହୁଏ ନାହିଁ । ଯେ ଯେତେ ଅଧିକ ବିଷୟ ଜାଣିବ ସେ ସେତେ ଅଧିକ ଜ୍ଞାନଲାଭ କରିବ ।

ଦେଶର ଅଧିକାଂଶ ଲୋକେ ଆଦୌ ଲେଖି ଜାଣନ୍ତି ନାହିଁ କି ପଢ଼ି ଜାଣନ୍ତି ନାହିଁ । ତଥାପି ସେମାନଙ୍କର ଦୈନନ୍ଦିନ କଥାବାର୍ତ୍ତାରୁ ଶିଳ୍ପ, କୃଷି, ବାଣିଜ୍ୟ, ଧର୍ମ, ପ୍ରଭୃତିର ଯଥେଷ୍ଟ ଜ୍ଞାନର ପରିଚୟ ମିଳେ । ...ଯେ ଯେତେ ବେଶି ବିଷୟ ଜାଣିବ ସେ ସେତେ ଅଧିକ ଜ୍ଞାନଲାଭ କରିବ । ଜାଣିବା ପୂର୍ବେ ବିଷୟ ଗୁଡ଼ିକ ଦେଖିବା

ଦରକାର କିମ୍ବା ଶୁଣିବା ଦରକାର । ମାତ୍ର ସବୁ ବିଷୟ ଦେଖିବା କି ଶୁଣିବାର ସୁଯୋଗ ମିଳିବା ବଡ଼ କଠିନ । ଯେ ଲେଖି ପଢ଼ି ଜାଣେ ସେ ସହଜରେ ନାନା ବିଷୟ ପୁସ୍ତକ, କାଗଜରୁ ପଢ଼ି ଜାଣିପାରିବ । ତେଣୁ ଲେଖା ପଢ଼ା ଜାଣିବା ଦ୍ୱାରା ଅଧିକ ବିଷୟ ଜାଣିବାର ବିଶେଷ ସୁବିଧା ହୁଏ । ଅଧିକ ଜ୍ଞାନଲାଭର ସୁଯୋଗ ମିଳେ । ସେହିହେତୁ ଲେଖାପଢ଼ା ଶିଖିବା ଖୁବ୍ ଆବଶ୍ୟକ । କିନ୍ତୁ କେବଳ ଲେଖିପଢ଼ି ଶିଖିଲେ ଯଥେଷ୍ଟ ଜ୍ଞାନଲାଭ ହୁଏ ନାହିଁ ।...

ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରାଇମେରୀ ସ୍କୁଲମାନଙ୍କରେ ଶିକ୍ଷାର ପ୍ରଣାଳୀ ଯେପରି ଚଳି ଆସୁଥିଲା ତଦ୍ୱାରା କେବଳ ଲେଖାପଢ଼ା ଶିକ୍ଷା ପ୍ରତି ଯଥେଷ୍ଟ ଦୃଷ୍ଟି ଦିଆଯାଉଥିଲା । ମାତ୍ର ଜୀବନ ପ୍ରତି ଏହାର ଉପଯୋଗିତାକୁ ଦୃଷ୍ଟି ଦଆଯାଉ ନଥିଲା । ଏ ସଂପର୍କରେ ଭିକାରୀ ଚରଣଙ୍କର ବକ୍ତବ୍ୟ ହେଲା "ଶିଶୁଟି କଥାକହି ଶିଖିବା ପୂର୍ବରୁ ଅନେକ ବିଷୟ ଦେଖି ଓ ଶୁଣି ବୁଝିପାରିଥାଏ ଓ ଚିହ୍ନି ସାରିଥାଏ । ସେ ଲେଖିପଢ଼ି ନ ଶିଖିଲେ ମଧ୍ୟ ଅନେକ ବିଷୟରେ ଜ୍ଞାନଲାଭ କରିପାରେ । ଯେଉଁ ବିଷୟଗୁଡ଼ିକ ସେ ଜାଣେ ସେଗୁଡ଼ିକ ସେ ଲେଖି ନପାରିଲେ ମଧ୍ୟ କଥାରେ କହିପାରେ ଓ କାର୍ଯ୍ୟରେ ପରିଣତ କରିପାରେ" ।

ଶିଶୁର ସ୍ୱାଭାବିକ ପ୍ରବୃତ୍ତି ଅନୁକରଣ । ଶିଶୁ ନାନା ବିଷୟ ଶିଖିବା ପାଇଁ ଆଗ୍ରହ ଦେଖାଇଥାଏ । ଯେଉଁ ଆଡ଼କୁ ଶିଶୁର ସ୍ୱାଭାବିକ ପ୍ରବୃତ୍ତି, ସେହି ଦିଗରେ ସାହାଯ୍ୟ ପାଇଲେ ସେ ଅନାୟାସରେ ଅନେକ ବିଷୟ ଶିକ୍ଷା କରିପାରିବ । ବିଷୟଗୁଡ଼ିକ ଶିଖିଲା ପରେ ଉକ୍ତ ବିଷୟମାନଙ୍କର ସଂକେତ ବା ଅକ୍ଷର ପରିଚୟ ପ୍ରତି ସ୍ୱଭାବତଃ ତାହାର ଶ୍ରଦ୍ଧାଜାତ ହେବ । ତାହା ନ ହେବା ପର୍ଯ୍ୟନ୍ତ ଅକ୍ଷର ପରିଚୟ ବା କେତେକଗୁଡ଼ିଏ ସଂକେତ ଚିହ୍ନିବା ତାହା ପକ୍ଷରେ ଅତ୍ୟନ୍ତ ନିରସ, ତେଣୁ କଠିଣ ।" (ପ୍ରାଥମିକ ଶିକ୍ଷାଦାନ ବିଧି ଭୂମିକା)

ଏ ସଂପର୍କରେ ଶିକ୍ଷକମାନଙ୍କୁ ନିର୍ଦ୍ଦେଶ ଦେଇ ଭିକାରୀ ଚରଣ ଲେଖିଛନ୍ତି "ମୋ ମତରେ ପ୍ରାଇମେରୀ ସ୍କୁଲର ପ୍ରଥମ ବର୍ଷରେ ଶିଶୁମାନଙ୍କୁ ଅକ୍ଷର ପଢ଼ି ଶିକ୍ଷିବା କାରଣ ବାଧ୍ୟ ନକରି ସେମାନଙ୍କୁ ନାନା ବିଷୟ ଦେଖାଇ ଏବଂ ନାନା ବିଷୟ ଶୁଣାଇ ସେ ସବୁ ବିଷୟରେ ସେମାନଙ୍କର ଜ୍ଞାନ ଜନ୍ମାଇବା ପ୍ରତି ବିଶେଷ ଦୃଷ୍ଟିଦେବା ଆବଶ୍ୟକ । ସେହି ଉଦ୍ଦେଶ୍ୟରେ ପ୍ରାଇମେରୀ ସ୍କୁଲର ପାଠ୍ୟ ତାଲିକା ଯେପରି ନିର୍ଦ୍ଦିଷ୍ଟ କରାଯାଉଅଛି ତଦନୁସାରେ କାର୍ଯ୍ୟ କରିବା କାରଣ ଶିକ୍ଷକମାନଙ୍କର

ସାହାଯ୍ୟ ନିମନ୍ତେ କେତେଗୁଡ଼ିଏ ଉଦାହରଣ ଏହି ପୁସ୍ତିକାରେ ଲିପିବଦ୍ଧ କରାଗଲା । ଏଥିର ଉଦ୍ଦେଶ୍ୟ ନୁହେଁ ଯେ ଶିକ୍ଷକ କେବଳ ଏହି ପୁସ୍ତିକା ଲିଖିତ ବିଷୟଗୁଡ଼ିକ ଶିଶୁମାନଙ୍କୁ ଶିଖାଇ ଦେଇ ବା ଘୋଷାଇ ଦେଇ ନିଶ୍ଚିନ୍ତ ରହିବେ । ଶିକ୍ଷକ କେବଳ ଏହି ପୁସ୍ତିକା ଲିଖିତ ଉଦାହରଣ ଅନୁସାରେ ନାନା ବିଷୟ ଓ ନାନା କୌଶଳ ଚିନ୍ତା କରି ଭିନ୍ନ ଭିନ୍ନ ବିଷୟମାନଙ୍କରେ ଶିଶୁମାନଙ୍କର ଜ୍ଞାନ ଜନ୍ମାଇବା କାରଣ ଚେଷ୍ଟା କରିବେ ।'' (ପ୍ରାଥମିକ ଶିକ୍ଷାଦାନ ବିଧି ଭୂମିକା)

ବର୍ତ୍ତମାନର କିଣ୍ଡର ଗାର୍ଟେନ ଶିକ୍ଷାର ଯେଉଁ ମୌଳିକ ପଦ୍ଧତି ବିଶେଷ ଆଦର ଲାଭ କରିଛି, ପ୍ରାୟ ଶହେ ବର୍ଷ ତଳେ ଚନ୍ଦ୍ରଶେଖର ନନ୍ଦ ତଥା ନନ୍ଦକିଶୋର ବଳ ଓ ସତୁରୀ ବର୍ଷ ତଳେ ଭିକାରିଚରଣ ସେ ସଂପର୍କରେ ଯୋଜନା ତିଆରି କରି ଓଡ଼ିଶାର ସ୍କୁଲମାନଙ୍କରେ ପ୍ରଚଳନ କରାଇଥିଲେ । ବର୍ତ୍ତମାନ ଅବଶ୍ୟ ଶିକ୍ଷାଦାନର ଅସଲ ମାର୍ଗରୁ ଅପସରିଯାଇ ଛାତ୍ରଛାତ୍ରୀମାନଙ୍କ ଉପରେ ପୁସ୍ତକର ବୋଝ ଲଦି ଦିଆଯାଉଛି । କିନ୍ତୁ ଭିକାରୀ ଚରଣ ଚିନ୍ତା କରିଥିଲେ ଶିଶୁମାନଙ୍କୁ ଭାରମୁକ୍ତ କରି ଖୋଲାମନରେ ବିବିଧ ମାର୍ଗରେ ଶିକ୍ଷାଦାନ ପାଇଁ । ଖେଳ କୌତୁକ ମାଧ୍ୟମରେ କିପରି ଶିକ୍ଷାଦାନ କରାଯାଇ ପାରିବ ସେ ବିଷୟରେ ଭିକାରୀ ଚରଣ କହନ୍ତି :

''ଶିଶୁମାନେ ଖେଳ କୌତୁକର ପ୍ରିୟ । ଚକଚକିଆ ରଙ୍ଗ ଦେଖିଲେ ଆକୃଷ୍ଟ ହୁଅନ୍ତି । କଣ୍ଢେଇଟିଏ ଦେଖିଲେ ହଠାତ ଧରନ୍ତି । ଶିକ୍ଷକ ଶିଶୁଶ୍ରେଣୀଟିକୁ ନାନା ପ୍ରକାର କଣ୍ଢେଇ ଓ ଚିତ୍ର ବିଚିତ୍ର ପଦାର୍ଥ ଦ୍ୱାରା ସୁସଜ୍ଜିତ ରଖିବେ । ଅନେକ ସମୟରେ ଦେଖାଯାଏ ଶିଶୁମାନେ ସ୍କୁଲକୁ ଆସିବାକୁ ରାଜି ହୁଅନ୍ତି ନାହିଁ । ଆନନ୍ଦରେ ଖେଳୁଥାନ୍ତି ଓ ବୁଲୁଥାଆନ୍ତି, ମାତ୍ର ସ୍କୁଲକୁ ଆସିଲେ ସେମାନଙ୍କର ଖେଳିବା ବୁଲିବାରେ ଯେଉଁ ଆନନ୍ଦ ଥାଏ ତାହା ପାଇ ପାରନ୍ତି ନାହିଁ । ଯେବେ ସ୍କୁଲରେ ଆସି ନାନା ରଙ୍ଗର ପଦାର୍ଥ ଦେଖନ୍ତେ ଓ ଖେଳିବା ବୁଲିବା ସମୟରେ ଯେଉଁ ଆନନ୍ଦ ଥାଏ ତାହା ଅପେକ୍ଷା ଅଧିକ ଆନନ୍ଦ ଉପଭୋଗର ସୁଯୋଗ ପାଆନ୍ତେ ତେବେ ସ୍ୱଭାବତଃ ସେମାନେ ଆପେ ସ୍କୁଲକୁ ଦୌଡ଼ନ୍ତେ । ଶିକ୍ଷକ ବରାବର ଦୃଷ୍ଟି ରଖିବେ ଯେପରି ଶିଶୁଗୁଡ଼ିକ ଘରଛାଡ଼ି ଓ ଅନ୍ୟତ୍ର ଖେଳାବୁଲାଛାଡ଼ି ତାଙ୍କ ସ୍କୁଲକୁ ଦୌଡ଼ିବାକୁ ଆକୃଷ୍ଟ ହେବେ । ଶିଶୁର ସ୍ୱାଭାବିକ ଆନନ୍ଦରେ କୌଣସି ପ୍ରତିବନ୍ଧକ ନ ଘଟାଇ ଖେଳାଇ ଖେଳାଇ ସେମାନଙ୍କୁ ଯେତେ ବିଷୟ ଶିକ୍ଷା ଦେଇ ପାରିବେ ତତ୍ପ୍ରତି ବିଶେଷ ଦୃଷ୍ଟି ରଖିବେ । କାରଣ ଖେଳ ବା କ୍ରୀଡ଼ା ସାହାଯ୍ୟରେ ଶିକ୍ଷାଦେବା ଶିଶୁ ପ୍ରବୃତ୍ତିର ଅନୁକୂଳ ।'' (ପ୍ରାଥମିକ ଶିକ୍ଷାଦାନ ବିଧି ଭୂମିକା)

ଶିଶୁର ଚଞ୍ଚଳ ମନ ଗୋଟିଏ ପ୍ରକାର ଜିନିଷ ବା ଗୋଟିଏ ପ୍ରକାର ଚିତ୍ର ଅଥବା କଣ୍ଢେଇରେ ସ୍ଥିର ରହେନାହିଁ । ଶିଶୁ ମନର ପରିବର୍ତ୍ତନ ସହିତ ଶିକ୍ଷା-ସହାୟକ ଜିନିଷର ପରିବର୍ତ୍ତନ ଆବଶ୍ୟକ । ଶିଶୁ ମନକୁ ଆକୃଷ୍ଟ କରିବା ପାଇଁ ଭିକାରୀ ଚରଣ ଯେଉଁ ପ୍ରସ୍ତାବ ଦେଇଥିଲେ ତାହା ଏହିପରି :

"ସ୍କୁଲରେ ନାନା ପ୍ରକାର ଚିତ୍ର, ପ୍ରତିମୂର୍ତ୍ତି, କଣ୍ଢେଇ ଓ ଶିଶୁମାନଙ୍କର ମନ ଆକୃଷ୍ଟ କରିବାର କାରଣ ଅନ୍ୟାନ୍ୟ ନାନା ପ୍ରକାର ପଦାର୍ଥ ସଂଗ୍ରହ ନିମନ୍ତେ ଯଥେଷ୍ଟ ଅର୍ଥ ଆବଶ୍ୟକ । ତେବେ କେତେଗୁଡ଼ିଏ ପଦାର୍ଥ ଖରିଦ କରି ଯେବେ ସୁବ୍ୟବସ୍ଥା କରାଯାଏ ତେବେ ସେହି ପଦାର୍ଥଗୁଡ଼ିକ ୨୪/୨୫ଟି ସ୍କୁଲ ସହଜରେ ବ୍ୟବହାର କରିପାରିବେ । ଏକ ପ୍ରକାର ପଦାର୍ଥ ବରାବର ଦେଖିଲେ ପିଲାମାନଙ୍କର ଆଗ୍ରହ କମିଯିବ । ପନ୍ଦର ଦିନ ଅନ୍ତରରେ ସେଗୁଡ଼ିକ ବଦଳାଇ ଦେବା ଆବଶ୍ୟକ । ନୂତନ ପଦାର୍ଥ ଦେଖି ପିଲାମାନଙ୍କର ଆନନ୍ଦ ହେବ । କେତେକ ଗୁଡ଼ିଏ ପଦାର୍ଥ ଗୋଟିଏ ସ୍କୁଲ ପନ୍ଦର ଦିନ ରଖିଲା ପରେ ସେଗୁଡ଼ିକ ସେ ଅନ୍ୟ ସ୍କୁଲକୁ ପଠାଇ ଦେବେ । ଆଉ ଗୁଡ଼ିଏ ନୂତନ ପଦାର୍ଥ ଆଣି ରଖିବେ । ଅନ୍ୟ ସ୍କୁଲଟି ମଧ୍ୟ ପନ୍ଦର ଦିନ ପରେ ସେଗୁଡ଼ିକ ତୃତୀୟ ସ୍କୁଲକୁ ପଠାଇ ଦେବେ । ପ୍ରଥମ ସ୍କୁଲରୁ ପୁଣି ନୂତନ ପଦାର୍ଥଗୁଡ଼ିକ ପାଇବେ । ଏହିପରି କଲେ ୨୪/୨୫ ଗୋଟି ସ୍କୁଲର ପିଲାମାନେ ପ୍ରତି ପନ୍ଦର ଦିନରେ ନୂତନ ନୂତନ ପଦାର୍ଥମାନ ଦେଖିବାର ସୁଯୋଗ ପାଇବେ ।"(ପ୍ରାଥମିକ ଶିକ୍ଷାଦାନ ବିଧି ଭୂମିକା)

ଭିକାରୀ ଚରଣ ଏଥିପାଇଁ ବିଧିବଦ୍ଧ ବ୍ୟବସ୍ଥା କରାଇଥିଲେ ଯେ ଗୋଟିଏ ସ୍କୁଲ ବର୍ଷକ ପରେ ପୁଣି ପୁରୁଣା ଜିନିଷ ପାଇଲେ ପିଲାଙ୍କର ଆଗ୍ରହ କମ୍ ହେବ ନାହିଁ । କଣ୍ଢେଇ ଗୁଡ଼ିକ ବିଭିନ୍ନ ସ୍କୁଲରେ ମଝିରେ ମଝିରେ ମରାମତ ହେଉଥିବ ବା ରଙ୍ଗ ଦିଆଯାଉଥିବ । ବିକୃତ ବା ଅସୁନ୍ଦର ଜିନିଷ ପିଲାମାନଙ୍କୁ ଖୁସି କରିବା ପରିବର୍ତ୍ତେ ବିରକ୍ତ କରେ ସେଥିପ୍ରତି ଧ୍ୟାନ ଦେବା ଆବଶ୍ୟକ । ଶିଶୁ ଶ୍ରେଣୀରୁ ଆରମ୍ଭ କରି ପ୍ରାଥମିକ ବିଦ୍ୟାଳୟର ବିଭିନ୍ନ ଶ୍ରେଣୀପାଇଁ ଭିକାରୀ ଚରଣ ଶିକ୍ଷା ବିଧି ଓ ତାର ପ୍ରୟୋଗ ବିଧି ସୁନ୍ଦର ଭାବରେ ଉପସ୍ଥାପନ କରିଥିଲେ । ପରିବେଶ ସହିତ ପରିଚିତ କରାଇବା ଓ ପରିବେଶ ସୁରକ୍ଷା ପାଇଁ ଭିକାରୀ ଚରଣ ଯେଉଁ ଦୃଷ୍ଟିଭଙ୍ଗୀ ୧୯୩୫ ମସିହା ବେଳକୁ ଦେଖାଇଥିଲେ, ଆଜିର ସମୟ ଓ ସମାଜ ପାଇଁ ଏହାର ଯଥେଷ୍ଟ ଉପଯୋଗିତା ରହିଛି । ଶିଶୁମାନଙ୍କ ଉପରୁ ବହି ବସ୍ତାନୀର ବୋଝ କମାଇବା ପାଇଁ ସଂପ୍ରତି ନାନା କମିଶନ ପରେ କମିଶନ ବସୁଛି । ବିସ୍ମୃତିର ଗର୍ଭରେ

ଲୁଚିଯାଇଥିବା ଭିକାରୀ ଚରଣଙ୍କ ପ୍ରାଥମିକ ଶିକ୍ଷାଦାନ ବିଧିରେ ପୁସ୍ତକର ବୋଝ ଲାଘବ କରି ଶିକ୍ଷାର ଉନ୍ନତି ବିକାଶ ପାଇଁ ନାନା ପ୍ରସ୍ତାବ ଦିଆଯାଇଥିଲା । ନାନ ପ୍ରକାର ପରୀକ୍ଷା ମୂଳକ ବ୍ୟବସ୍ଥା ଯେପରି ଖଞ୍ଜି ଯାଇଥିଲେ ସେକଥା ଆଜି ଦୃଷ୍ଟି ଅନ୍ତରାଳରେ ରହିଯାଇଛି ।

## କୁଟୀରଶିଳ୍ପ ଓ ଅନ୍ୟାନ୍ୟ କ୍ଷେତ୍ର

ଓଡ଼ିଶା ଶିଳ୍ପ ସମୃଦ୍ଧିରେ କେବଳ ଭାରତ ବର୍ଷରେ ନୁହେଁ ସାଗର ସେପାରି ଦେଶରେ ବି ପତାକା ଉଡ଼ାଇ ଥିଲା । ଦେଶ ପରାଧୀନ ହେବାପରେ ଜାତି ତାର ସମସ୍ତ ଗର୍ବ ଗୌରବକୁ ହରାଇ ବସିଲା । କ୍ରମେ ଜାତି ଦରିଦ୍ର ହୋଇଗଲା, କେବଳ ଧନରେ ନୁହେଁ ମନରେ ବି ଦରିଦ୍ର ପାଲଟିଗଲା । ଜାତି ଅନ୍ଧ କୁସଂସ୍କାରରେ ବୁଡ଼ିଗଲା । ଆଧୁନିକ ଯୁଗର ସଂସ୍କାରପ୍ରେମୀ ବ୍ୟକ୍ତିମାନେ ଜାତିର ଦୁର୍ଗତିର କାରଣ ଖୋଜି ବସିଲେ । ପରିବର୍ତ୍ତନ ପାଇଁ ଚେଷ୍ଟା କଲେ । ଭିକାରୀ ଚରଣ ସେହି ପ୍ରକାର ସଂସ୍କାରକମାନଙ୍କ ମଧ୍ୟରୁ ଜଣେ । ଓଡ଼ିଆ ଜାତିର ଦୁର୍ଗତିର ଅବସାନ ପାଇଁ କେତେକ ମହାନ ବ୍ୟକ୍ତି ନାନା ପ୍ରକାର ଉପାୟ ବତାଇଛନ୍ତି । ଭାଷାସୁରକ୍ଷା, ସାହିତ୍ୟର ବିକାଶ, ପତ୍ରପତ୍ରିକାର ପ୍ରସାର, ସାମାଜିକ ବୈଷମ୍ୟ ଦୂରୀକରଣ, ଜାତୀୟ ଏକତା ରକ୍ଷା ତଥା ଓଡିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଇତ୍ୟାଦି ଏହି ଉପାୟସବୁର ପ୍ରରୂପ । କେତେକ ସଂସ୍କାରକ ଚିନ୍ତାକଲେ ଜାତୀୟ ଚେତନା, ଜାତିର ନୈତିକ ଅଭିବୃଦ୍ଧି; ଅନ୍ୟ କେତେକ ଚିନ୍ତାକଲେ ଜାତିର ଆର୍ଥନୀତିକ ଅଭିବୃଦ୍ଧି ନ ହେଲେ ଜାତିର ଉନ୍ନତି ସମ୍ଭବ ନୁହେଁ ।

ଊନବିଂଶ ଶତକର ଶେଷ ଭାଗରେ ଓ ବିଂଶ ଶତକର ଆଦ୍ୟ ଭାଗରେ ଜାତୀୟ ଗୌରବ ମଧୁସୂଦନ ସେହି ଦୃଷ୍ଟିରୁ ଜାତୀୟ ଜାଗରଣ ସୃଷ୍ଟି କରାଇଥିଲେ । ଅବସ୍ଥାଚକ୍ରରେ ଧର୍ମାନ୍ତରିତ ହୋଇଥିଲେ ମଧ୍ୟ ଓଡ଼ିଶାର ଗର୍ବଗୌରବ ସ୍ୱାଭିମାନର ପ୍ରତୀକ ଜଗନ୍ନାଥ ମନ୍ଦିର ସଂପର୍କରେ ତାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପୁଣି ସେ ଦେଖିଲେ ଜାତିର ଅସ୍ଥି ମଜ୍ଜାରେ ଯେପରି ବୀରତ୍ୱର ସତ୍ତା ଲୋପ ପାଇ ପାଇ ଯାଉଛି, ଭୀରୁତା କ୍ରମଶଃ ବସା ବାନ୍ଧି ବାନ୍ଧି ଚାଲିଛି । ଏହି ପୁନର୍ଜାଗରଣ ପାଇଁ ଜାତିପ୍ରାଣ ମଧୁବାବୁଙ୍କ ଲେଖନୀରୁ ଝରିପଡ଼ିଥିଲା ପ୍ରାଣଛୁଆଁ କାଳଜୟୀ କବିତା କେତୋଟି । ପୁଣି ସେ ଦେଖିଲେ ଲୋକଙ୍କର ଆର୍ଥିକ ଅବସ୍ଥାର ପରିବର୍ତ୍ତନ ନ ହେଲେ ଜାତିର ପୂର୍ଣ୍ଣାଙ୍ଗ ବିକାଶ ସମ୍ଭବ ନୁହେଁ । ଇନ୍ଦ୍ରଙ୍କ ଉପରେ ନିର୍ଭର କରୁଥିବା କୃଷି ମାଧ୍ୟମରେ ଜାତିର ଆର୍ଥନୀତିକ ମାନଦଣ୍ଡର ଉନ୍ନତି ସମ୍ଭବ ନୁହେଁ । ଶିଳ୍ପର

ବିକାଶ ହେଲେ, ବାଣିଜ୍ୟର ପ୍ରସାର ହେଲେ ଲୋକଙ୍କ ବିକାଶ ସମ୍ଭବ ହେବ । ଏଣୁ ମଧୁସୂଦନ ଉତ୍କଳରେ ଶିଳ୍ପର ବିକାଶ ପାଇଁ ଅଣ୍ଟା ଭିଡ଼ିଲେ । ମାତ୍ର ସ୍ୱାଭିମାନୀ ମଧୁବାବୁଙ୍କର ବ୍ୟବସାୟୀ ବୁଦ୍ଧିର ଅଭାବରୁ ତାଙ୍କ ପ୍ରତିଷ୍ଠିତ ଶିଳ୍ପ ସଂସ୍ଥା ବିକାଶ ଲାଭ କରିପାରିଲା ନାହିଁ । ତାଙ୍କ ଶିଳ୍ପ-ଦୃଷ୍ଟି ହିଁ ତାଙ୍କର ଆର୍ଥିକ ଦୁର୍ଗତିର କାରଣ ହେଲା ।

ମଧୁଶିଷ୍ୟ ଭିକାରୀ ଚରଣଙ୍କ ଦୃଷ୍ଟିଭଙ୍ଗୀ ମଧ୍ୟ ଅନୁରୂପ ଥିଲା । ମଧୁବାବୁଙ୍କ ଭଳି ଓକିଲାତିରୁ ସେ ଆଞ୍ଜୁଳା ଆଞ୍ଜୁଳା ପଇସା ରୋଜଗାର କରିପାରି ନଥିଲେ । ଏଣୁ ମଧୁବାବୁଙ୍କ ପରି ସେ ସଂଭ୍ରାନ୍ତ ଶିଳ୍ପ ପ୍ରତିଷ୍ଠା ପାଇଁ ଚିନ୍ତାକରି ପାରିଲେ ନାହିଁ । ପ୍ରକାରାନ୍ତରେ ଏ ଜାତିର ଅସଲ ଅବସ୍ଥାକୁ ଭିକାରୀ ଚରଣ ଅନୁଭବ କରିପାରିଥିଲେ । ସେ ଦେଖିଲେ ଯେ ଦେଶବାସୀଙ୍କର ଆର୍ଥିକ ଅବସ୍ଥାକୁ ବଦଳାଇବାକୁ ପଡ଼ିବ ମାତ୍ର ଏଥିପାଇଁ ପୁଞ୍ଜି ଖଟାଇବାର ସାମର୍ଥ୍ୟ ଦେଶବାସୀଙ୍କର ନାହିଁ । ଏଣୁ ସଂସ୍କାରକ ଭିକାରୀ ଚରଣ ସାମାନ୍ୟ ମୂଳଧନ, ବିନା ମୂଳଧନରେ ଶିଳ୍ପ ପ୍ରତିଷ୍ଠା ପାଇଁ ଗବେଷଣା ଚଳାଇଲେ । ତାଙ୍କର ଗବେଷଣାଲବ୍ଧ ଜ୍ଞାନ ହିଁ ଏକ ନୂତନ ଦିଶା ଦେଖାଇଲା । ପୁଣି ଦୁଃଖର କଥା ଭିକାରୀ ଚରଣଙ୍କ ସମୟ ତାଙ୍କ ପ୍ରତି ପୂର୍ଣ୍ଣମାତ୍ରାରେ ସହାୟକ ହୋଇପାରିଲା ନାହିଁ । ଏ ଶତକର ଷଷ୍ଠ ଦଶକ ପରେ କୁଟୀରଶିଳ୍ପର ଯେପରି ଚାହିଦା ବଢ଼ି ବଢ଼ି ଚାଲିଲା, ଭିକାରୀ ଚରଣଙ୍କ ଜୀବିତାବସ୍ଥାରେ ଏସବୁ ଜିନିଷର ସେପରି ଚାହିଦା ନଥିଲା । ପୁଣି ସରକାରୀ ପୃଷ୍ଠପୋଷକତା ସେହି ଅନୁପାତରେ ମିଳିପାରିଲା ନାହିଁ ।

କଳିଙ୍ଗ ଭାରତୀର ପ୍ରତିଷ୍ଠାତା ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ଭିକାରୀ ଚରଣଙ୍କ ଶିଳ୍ପଦୃଷ୍ଟି ସଂପର୍କରେ ଉଲ୍ଲେଖ କରିଛନ୍ତି "ଉତ୍କଳୀୟମାନଙ୍କୁ ଉଦ୍‌ବୁଦ୍ଧ କରି ପୂର୍ବ ଗୌରବର ସମୃଦ୍ଧି ନିମନ୍ତେ ସେମାନଙ୍କୁ କୁଟୀରଶିଳ୍ପରେ ବ୍ରତନିଷ୍ଠ କରିବା ପାଇଁ ରାୟବାହାଦୁର ଡକ୍ଟର ଭିକାରୀ ଚରଣ ପଟ୍ଟନାୟକ ଆଜୀବନ ପ୍ରଯତ୍ନ କରିଅଛନ୍ତି । ଏ ଅଭିଳାଷ ତାଙ୍କ ହୃଦୟକୁ ସମଗ୍ର ଭାବରେ ଅଭିଭୂତ କରିଅଛି ।" [ସ୍ୱଜାତି କରଣୀ(ମର୍ମବାଣୀ)-ମୁଖବନ୍ଧ]

ଏହି ଶିଳ୍ପ ଦୃଷ୍ଟିଭଙ୍ଗୀ ସଂପର୍କରେ ଭିକାରୀ ଚରଣଙ୍କ ନିଜ ମତାମତ ପ୍ରଣିଧାନ ଯୋଗ୍ୟ "ଯେଉଁ ପଦାର୍ଥମାନ ଓଡ଼ିଶାର ଗ୍ରାମମାନଙ୍କରେ ସହଜରେ ମିଳେ ଏବଂ ଯେଉଁ ପଦାର୍ଥ ବ୍ୟବହାର ଅଭାବରେ ସାଧାରଣତଃ ନଷ୍ଟ ହେଉଅଛି, ସେହି ସବୁ ପଦାର୍ଥ ଦ୍ୱାରା କି କି ଶିଳ୍ପ ହୋଇପାରେ, ତାହାହିଁ ଏ ପୁସ୍ତକରେ ଅଧିକ ପରିମାଣରେ ଦେଖାଇ ଦିଆଯାଇଛି ।"(ଗୃହଶିଳ୍ପ ପ୍ରଥମ ଖଣ୍ଡ ; ଭୂମିକା)

ଭିକାରୀ ଚରଣ ତାଙ୍କ ଶିଳ୍ପର କଞ୍ଚାମାଲ ସଂପର୍କରେ ବ୍ୟାପକ ଧାରଣା ଦେଇ ଲେଖିଛନ୍ତି "ଯେଉଁଠାରେ ଯେଉଁ ପଦାର୍ଥମାନ ସହଜରେ ଓ ବିନାମୂଲ୍ୟରେ ବା ଅଳ୍ପ ମୂଲ୍ୟରେ ମିଳିପାରିବ, କେବଳ ସେହି ପଦାର୍ଥମାନଙ୍କ ସାହାଯ୍ୟରେ ଅଙ୍ଗୁଳି ପରିଚାଳନା ଶିକ୍ଷା ଦେବା ବାଞ୍ଛନୀୟ ।

ଗ୍ରାମମାନଙ୍କରେ ଯେଉଁସବୁ ଶିଳ୍ପଉପଯୋଗୀ ପଦାର୍ଥ ମିଳେ, ସେମାନଙ୍କ ମଧ୍ୟରୁ (୧) କେତେକ ବଣବୁଦା ଓ ପତିତ ଜମିରେ ଆପେ ଆପେ ଉଠିଥିବା ବୃକ୍ଷଲତାମାନଙ୍କରୁ ସଂଗ୍ରହ କରାଯାଇପାରେ । ଯଥା- ଖଜୁରିପତ୍ର, ବେଣା, କାଇଁଚ ସୁଆଁ ଲଇ ପ୍ରଭୃତି ଭିନ୍ନ ଭିନ୍ନ ପ୍ରକାରର ଲତା, ତୃଣ, ବେରୁହାଁ, କାଣ୍ଡକାଣ୍ଡିଆ, କେଉଟୀ, ତଣ୍ଡି, ନାଳିଆ, ବହୁମୁରୁଗା ପ୍ରଭୃତି ନାନା ପଦାର୍ଥ । (୨) ଆଉ କେତେଗୁଡ଼ିଏ ପଦାର୍ଥ ଚାଷୀମାନଙ୍କର ଚାଷ ଉତ୍ପନ୍ନରୁ ମିଳିପାରେ ଯଥାଃ- କୁଟା, ଝୋଟ, ଛଣପଟ, କପା, ଆଖୁଫୁଲର କାଣ୍ଡ, ବାଉଁଶ, ନଡ଼ିଆକତା, ନଡ଼ିଆ ଖଡ଼ିକା, ନଡ଼ିଆ ସଢ଼େଇ, ତାଳପତ୍ର, ତାଳ କୋରଟ, ତାଳ ଝଁମଟ, ଗବପତ୍ର ଇତ୍ୟାଦି । (୩) ଆଉ କେତେକ ପଦାର୍ଥ ଅଛି, ସେଗୁଡ଼ିକ କୌଣସି କୌଣସି ସ୍ଥାନରେ କେହି କେହି ଲଗାନ୍ତି ବା ଚାଷ କରନ୍ତି ଏବଂ କୌଣସି କୌଣସି ସ୍ଥାନରେ ସେ ସବୁ ଆପେ ଆପେ ବଣବୁଦାରେ ଉଠିଥାଆନ୍ତି । ଯଥାଃ- କିଆପତ୍ର, କିଆଚେର, ବେତ, ବାରବର୍ଷିଆ, ବୋବେଇ ଇତ୍ୟାଦି ।

ଆମମାନଙ୍କର ଗ୍ରାମନିକଟସ୍ଥ ବଣବୁଦା ଓ ପତିତ ଜମିରେ ଏହିପରି କେତେ ପଦାର୍ଥ ଯେ ଆପେ ଆପେ ଉତ୍ପନ୍ନ ହୋଇ ନଷ୍ଟ ହେଉଅଛି, ତାହାର ସୀମା ନାହିଁ । ଚାଷୀମାନେ ଯେତେ ପ୍ରକାରର ଚାଷ କରୁଅଛନ୍ତି, ତହିଁ ମଧ୍ୟରୁ ଅଧିକାଂଶ ଉତ୍ପନ୍ନ ପଦାର୍ଥ ଅଳ୍ପମୂଲ୍ୟରେ ବିକ୍ରିକରି ଦେଉଅଛନ୍ତି । କେତେକ ପଦାର୍ଥ ବ୍ୟବହାର ଅଭାବରେ କେବଳ ନଷ୍ଟ ହେଉଅଛି । ଯେବେ ଲୋକେ ଶିଳ୍ପ ପ୍ରତି ମନଯୋଗୀ ହୁଅନ୍ତେ, ତେବେ ସେହି ସବୁ ପଦାର୍ଥ ନାନା ପ୍ରକାରେ ବ୍ୟବହାର କରି ତହିଁରୁ ବହୁମୂଲ୍ୟ ପଦାର୍ଥମାନ ଉତ୍ପାଦନ କରି ପାରନ୍ତେ ।" (ଗୃହଶିଳ୍ପ ଭୂମିକା)

ସେ ପୁଣି କହନ୍ତି : "ଏ ପ୍ରଦେଶରେ ଯେତେ ପ୍ରକାର ଗଛ ଅଛି, ପ୍ରତି ଗଛର ଛାଲିରୁ ଜାତିଏ ଜାତିଏ ରଙ୍ଗ ବାହାରିପାରେ । ସୂତା, ପାଟ, ପଶମର ଲୁଗା ରଙ୍ଗ କରିବା ପାଇଁ ଏହି ରଙ୍ଗ ବେଶ ଉପଯୋଗୀ । କେତେ ପ୍ରକାର ଫୁଲ, ଫଳ ଓ ପତ୍ର ଅକାରଣରେ ନଷ୍ଟ ହେଉଅଛି । ସେହି ସବୁ ପଦାର୍ଥ ବ୍ୟବହାର କରିପାରିଲେ, ତହିଁରୁ ବହୁମୂଲ୍ୟ ଉପାଦେୟ ପଦାର୍ଥମାନ ପ୍ରସ୍ତୁତ ହୋଇପାରିବ ।"(ଗୃହଶିଳ୍ପ-ମୁଖବନ୍ଧ)

ଏ ସଂପର୍କରେ ଭିକାରୀ ଚରଣଙ୍କ ଶେଷ ଅଭିବ୍ୟକ୍ତି ହେଲା "ଏ ଦେଶରେ ଶିଳ୍ପ ଉପଯୋଗୀ ପଦାର୍ଥର ଅଭାବ ନାହିଁ । କେବଳ ଶିଳ୍ପ ପ୍ରତି ଲୋକଙ୍କର ଦୃଷ୍ଟି, ମନଯୋଗ ଏବଂ ଧୈର୍ଯ୍ୟର ଅଭାବ । ଶିଳ୍ପପ୍ରତି ମନଯୋଗୀ ହେଲେ ନାନା ପନ୍ଥା ଆପେ ଫିଟିଯିବ । ଅର୍ଥାଗମର ପଥ ଉନ୍ମୁକ୍ତ ହୋଇଯିବ ।" (ଗୃହଶିଳ୍ପ ମୁଖବନ୍ଧ)

ଏହି ପ୍ରକାର ଶିଳ୍ପର ବିକାଶ ପାଇଁ ଭିକାରୀ ଚରଣ ଗୃହଶିଳ୍ପ ଉପରେ ମୂଲ୍ୟବାନ ସାତଖଣ୍ଡ ବହି ଲେଖିଛନ୍ତି । ଏହି ସଚିତ୍ର ସାତଖଣ୍ଡ ପୁସ୍ତକରେ ବିଭିନ୍ନ ଦ୍ରବ୍ୟର ଜିନିଷ ତିଆରି ପାଇଁ କଞ୍ଚାମାଲର ପରିଚିତି, ଜିନିଷ ପ୍ରସ୍ତୁତି ସଂପର୍କୀୟ ବିଧାନ ଓ ପ୍ରସ୍ତୁତିକୌଶଳ ସରଳ ଭାଷାରେ ବିଭିନ୍ନ ଚିତ୍ର ସହିତ ପ୍ରଦାନ କରାଯାଇଛି । ସେ ବହିର ଉପାଦେୟତାକୁ ଅନୁଭବ କରି ବଙ୍ଗଳା ସରକାର ସମସ୍ତ ଗୃହଶିଳ୍ପ ପୁସ୍ତକକୁ ବଙ୍ଗଳାରେ ଅନୁବାଦ କରାଇ ତାଙ୍କ ରାଜ୍ୟରେ ସୁଲଭ ମୂଲ୍ୟରେ ଯୋଗାଇ ଦେଇଥିଲେ(ଦ୍ରଷ୍ଟବ୍ୟ ପରିଶିଷ୍ଟ-୩) । ଅନ୍ୟାନ୍ୟ କେତେକ ଭାଷାରେ ମଧ୍ୟ ଏହି ପୁସ୍ତକ ଅନୂଦିତ ହୋଇଥିଲା । ଭିକାରୀ ଚରଣ କୁଟୀର ଶିଳ୍ପର ବିଧିବିଧାନକୁ ସରଳ ଭାଷାରେ ଗୀତ ମାଧ୍ୟମରେ ଲେଖି ଗାଁ ଗହଳିରେ ପ୍ରଚାର କରାଇଥିଲେ ।

ଗୃହଶିଳ୍ପ ସଂପର୍କରେ ଭିକାରୀ ଚରଣ କେବଳ କବିତା ପ୍ରବନ୍ଧ ଲେଖୁ ନଥିଲେ, କେବଳ ଉପଦେଶ ଦେଇ ଯାଉନଥିଲେ ସେ ଦୃଷ୍ଟାନ୍ତ ଭାବରେ ସମସ୍ତ ଜିନିଷକୁ ଲୋକମାନଙ୍କୁ ଦେଖାଇ ଯାଉଥିଲେ । ସ୍କୁଲର ଛାତ୍ର ଶିକ୍ଷକ ଓ ତାଲିମ ନେବାକୁ ଆସିଥିବା ବିଭିନ୍ନ ବୟସର ଶିକ୍ଷାର୍ଥୀଙ୍କୁ ସେ ଦୃଷ୍ଟାନ୍ତ ମାଧ୍ୟମରେ ଦେଖାଇ ଦେଉଥିଲେ । ଏପରିକି ସେ ସମୟରେ ବ୍ୟୟବହୁଳ ମୁଦ୍ରଣ କାର୍ଯ୍ୟରେ ଯଥେଷ୍ଟ ସଂଖ୍ୟକ ଛବି ଦେଇ ପୁସ୍ତକ ରଚନା କରୁଥିଲେ । କୁଟୀରଶିଳ୍ପରେ ବିଭିନ୍ନ ଜିନିଷ ତିଆରି କରିବାର ପଦ୍ଧତିକୁ ଚିତ୍ର ସାହାଯ୍ୟରେ ବୁଝାଇ ଦେଉଥିଲେ ।

ଭିକାରୀ ଚରଣଙ୍କ ପୁଅର ଇଣ୍ଡଷ୍ଟ୍ରୀ କଟେଜକୁ ଦେଖିବା ପାଇଁ ବହୁ ବ୍ୟକ୍ତି ଆସୁଥିଲେ । ସେମାନଙ୍କ ମଧରେ ଜାତିର ଜନକ ମହାତ୍ମା ଗାନ୍ଧୀ ; କେନ୍ଦ୍ର ସରକାରଙ୍କ ପ୍ରଶାସନରୁ : ୨. ସାର୍ ସର୍ବପଲ୍ଲୀ ରାଧାକ୍ରଷ୍ଣନ୍, ୩. ଡଃ କୈଳାସ ନାଥ କାଟ୍‌ଜୁ, ୪. ଶ୍ରୀ ଜଗଜୀବନ ରାମ, ୫. ଶ୍ରୀ ଭି. ଭି. ଗିରି, ୬. ରାଜକୁମାରୀ ଅମୃତ କାଉର, ୭. ଶ୍ରୀ ଆର୍ ବାନାର୍ଜି(ଚେୟାରମ୍ୟାନ), ୮. ଶ୍ରୀ କେ. ପ୍ରସାଦ (ଡି.ଜି ପୋଷ୍ଟ ଆଣ୍ଡ ଟେଲିଗ୍ରାଫ୍), ୯. ଶ୍ରୀ ଏନ୍. ଦାସ (ଡି.ଜି. ଅଫ ରିସେଟଲମେଣ୍ଟ ଏବଂ କର୍ମଯୋଗାଣ, ଭାରତ ଏବଂ ସିଂହଳ), ୧୦. ଡଃ ଜେ.ସି ଘୋଷ, (ଡି.ଜି ଇଣ୍ଡଷ୍ଟ୍ରୀ), ୧୧. ଡଃ ଡି. ଏନ୍, ସେନ୍ ପ୍ରମୁଖ ।

ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିମାନେ ହେଲେ : ୧୨. ଶ୍ରୀ ସି.ଭି. ରମଣ, ୧୩. ଶ୍ରୀ ହୃଦୟନାଥ କୁଞ୍ଜରୁ, ୧୪. ଶ୍ରୀ ଏ. ଭି. ଥାକ୍କର, ୧୫. ଶ୍ରୀ ଟି. ବି ଭଟ୍ଟ, ୧୬. ଶ୍ରୀ ଲକ୍ଷ୍ମୀନାରାୟଣ ।

ଓଡ଼ିଶାରୁ : ୧୭. ଜାତୀୟ ଗୌରବ ମଧୁସୂଦନ ଦାସ, ୧୮. ଡଃ ହରେକୃଷ୍ଣ ମହତାବ, ୧୯. ଡକ୍ଟର ପ୍ରାଣକୃଷ୍ଣ ପରିଜା, ୨୦. ଶ୍ରୀ ବିଶ୍ୱନାଥ ଦାସ, ୨୧. ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି, ୨୨. ଶ୍ରୀ ବୀରକିଶୋର ରାୟ, ୨୩. ଏମ୍.ଫଜଲ ଅଲ୍ଲୀ, ୨୪. ଶ୍ରୀ ଚନ୍ଦୁଲାଲ ତ୍ରିବେଦୀ, ୨୫. ଏସ୍. ଆସଫ ଅଲ୍ଲୀ, ୨୬. ଏଚ୍ ଡବ୍ଲିଉ ଲୁଇସ୍, ୨୭. ସାର୍ ଜନ ହବାକ୍, ୨୮. ଶ୍ରୀ ନୀଳମଣି ସେନାପତି ପ୍ରମୁଖ ।

ପଶ୍ଚିମବଙ୍ଗରୁ : ୨୯. ଡକ୍ଟର ଶ୍ୟାମା ପ୍ରସାଦ ମୁଖାର୍ଜି, ୩୦. ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘୋଷ, ୩୧. ଡଃ ରାଧାକୁମୁଦ ମୁଖାର୍ଜି, ୩୨. ଡଃ କାଳିଦାସ ନାଗ, ୩୩. ଶ୍ରୀ ନିହାରେନ୍ଦୁ ଦତ୍ତ ମଜୁମଦାର, ୩୪. ଡଃ ସୁନୀତି କୁମାର ଚାଟାର୍ଜି, ୩୫. ଶ୍ରୀ ତୁଷାର କାନ୍ତ ଘୋଷ, ୩୬. ଡଃ ମେଘନାଦ ସାହା, ୩୭. ଶ୍ରୀମତୀ ମାଲିନୀ ଦତ୍ତ, ୩୮. ଡଃ ରାଧାବିନୋଦ ପାଲ୍, ୪୦. ପଣ୍ଡିତ ଏସ୍. ଏନ୍. ସେନ ପ୍ରମୁଖ ଅନେକ ବ୍ୟକ୍ତି ।

ବିହାରରୁ : ୪୦. ଡଃ ସଚ୍ଚିଦାନନ୍ଦ ସିହ୍ନା, ୪୧. ଆର୍. ଆର୍ ଦିବାକର, ଗଭର୍ଣ୍ଣର, ବିହାର ।

ମାନ୍ଦ୍ରାଜରୁ : ୪୨. ଶ୍ରୀ ପି. ସି ରାଜମଦ୍‌ଦାର (ଚିଫ୍ ଜଷ୍ଟିସ୍, ମାଡ୍ରାସ) ୪୩. ଶ୍ରୀ ପି. ଏସ୍ କୁମାରସ୍ୱାମୀ ରାଜୁ (ମୁଖ୍ୟମନ୍ତ୍ରୀ), ୪୪. ଡଃ ରାମସ୍ୱାମୀ (ବିଶାଖାପାଟଣା) ।

କେନ୍ଦ୍ର ପ୍ରଦେଶରୁ : ୪୫. ଶ୍ରୀ ଜେ. ସି. କୁମାରପ୍ପା (ସେକ୍ରେଟାରୀ, ଅଲ ଇଣ୍ଡିଆ କଟେଜ ଇଣ୍ଡଷ୍ଟ୍ରୀ) ।

ଉତ୍ତର ପ୍ରଦେଶରୁ : ୪୬. ଶ୍ରୀ ଅମର ନାଥ ଝା (କୁଳପତି, ଏହ୍ଲାହାବାଦ ବିଶ୍ୱବିଦ୍ୟାଳୟ), ୪୭. ଶ୍ରୀ ଏସ୍. କେ ମୈତ୍ର (ପ୍ରଫେସର, ବନାରସ ବିଶ୍ୱବିଦ୍ୟାଳୟ) ।

ଅନ୍ୟମାନଙ୍କ ମଧ୍ୟରେ ବମ୍ବେରୁ : ଶ୍ରୀ ଏମ୍. ଭି. ଧୁଣ୍ଡା (ବମ୍ବେ ବିଶ୍ୱ ବିଦ୍ୟାଳୟ) ; ୪୯. ରାଜସ୍ଥାନର ଶିକ୍ଷାମନ୍ତ୍ରୀ, ୫୦. ପଣ୍ଡିତ ରାହୁଳ ସାଂସ୍କୃତାୟନ ସମେତ ଅନେକ ବିଦେଶୀ ବିଦ୍ୱାନ ଓ ଗବେଷକ ଏହି ସଂସ୍ଥାକୁ ପରିଦର୍ଶନ କରିଯାଇଛନ୍ତି ।

ଭିକାରୀ ଚରଣଙ୍କ ପୁଅର କଟେଜ ଇଣ୍ଡଷ୍ଟ୍ରୀ ସଂପର୍କରେ ମଧୁସୂଦନ ଦାସ(ମିଷ୍ଟର ଦାସ)ଙ୍କର ପତ୍ର ଓ ମନ୍ତବ୍ୟକୁ ନମୁନା ସ୍ୱରୂପ ଉପସ୍ଥାପନ କରାଯାଇଛି । ଭିକାରୀ ଚରଣଙ୍କ ଦୃଷ୍ଟିବଳୟ ଥିଲା ସୁଦୂରପ୍ରସାରୀ । ଉପଯୁକ୍ତ ପୃଷ୍ଠପୋଷକତା ଅଭାବରୁ ତଥା ସମସାମୟିକ ସମାଜ ଏହାକୁ ବ୍ୟାପକ ଭାବରେ ଗ୍ରହଣ କରି ନପାରିବାରୁ ପୁଅର କଟେଜ୍ ଇଣ୍ଡଷ୍ଟ୍ରୀ ପୁଅର ଅବସ୍ଥାରେ ରହିଗଲା । ନିମ୍ନ ପତ୍ରଟିରେ ଭିକାରୀ ଚରଣଙ୍କ ଦୃଷ୍ଟିକୋଣ ସହିତ ମିଷ୍ଟର ଦାସଙ୍କର ଦୃଷ୍ଟିକୋଣର ପରିଚୟ ମିଳିପାରିବ ।

Mission Road
Cuttack
9th February, 1933

My Dear Bhikari Babu,

I prefer to call you by the name Bhikari without your title Rai Saheb. When naming you Bhikari your parents had a prophetic insight into the activities to which you have devoted yourself for improving the means of livelihood of the poor people of Orissa. The first thing necessary in any genuine attempt to improve the earnings of the poor people is to realise the depths of their poverty and the reason for it. To have a genuine sympathy for the poor people, one must place himself in the daily trails of their life regardless of the consequences which an attempt to improve their econimic condition might affect you. I find from the contains of the Visitors Book that many people have appreciated your activities. Education in India has hitherto been confined to the cultivation of the intellect. Nature has given man a body every part of whcih is capable of culture in a manner which would place him above wants of life, if not, in a position of affluence. In Europe, for instance, nations have learnt to bring to a high state of culture the different parts of body, for instance, the French have cultivated their eyes and their tongue and the result is Freance dictates fashion to the world and supplies the most expensive cooks to the world; the German has cultivated his sense of hearing and the result is Germany supplies all musical instruments to the world; the Italian has cultivated his throat and

the most vocal musicians come from Italy. India has yet to learn this. I have been really struck with your sincere sympathy for the poor and your strenuous efforts to improve their econimic condition. You ask me to write something on the Visitors' Book. I should not be justified in doing so, for you know my efforts to improve the Industries of Orissa proved a perfect failure, bringing me to the position of a street beggar. I do hope you will not meet with the failure that I met. Your present position requires something more than more expression of appreciation of your virtues. What you require is practical suggestions whcih will enable you to commend your works to rich men in this country but specially in Europe. I shall be very glad to talk to you on the subject and discuss methods. Please excuse me if I don't feel competent to note in the Visitors' Book appreciation of what you have done and been doing.

May God bless you with success is the sincere prayer of

Yours very sincerely,
M. S. Das.

# ତୃତୀୟ ଭାଗ

# ଭିକାରୀ ଚରଣଙ୍କ ସୃଷ୍ଟିସଂପଦ

## ନାଟ୍ୟକାର ଭିକାରୀ ଚରଣ :

ଇଂରେଜମାନେ ପୂର୍ବ ଓଡ଼ିଶା ଅଧିକାର କଲେ ଖ୍ରୀ: ୧୮୦୩ରେ ଓ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ବସିଲା ଖ୍ରୀ: ୧୯୦୩ରେ । ଏହି ଗୋଟିଏ ଶତାବ୍ଦୀ ମଧ୍ୟରେ ଓଡ଼ିଶାର ସାମାଜିକ, ଆର୍ଥନୀତିକ ଓ ସାଂସ୍କୃତିକ ଜୀବନରେ ନାନା ପରିବର୍ତ୍ତନ ହୋଇଯାଇଛି । କୌଣସି ଜିନିଷ ଚରମ ଅବସ୍ଥାରେ ପହଞ୍ଚିଲା ପରେ ହିଁ ତାର ପରିବର୍ତ୍ତନ ହୁଏ । ଏହି ଶତକ ମଧ୍ୟରେ ଓଡ଼ିଶାର ଅନେକ ଘଟଣାର ଚରମ ପରିଣତି ଘଟିବା ସଂଗେ ସଂଗେ ନୂତନତ୍ୱର ଅଭ୍ୟୁଦୟ ହୋଇପାରିଛି । ଷୋଡ଼ଶ ଶତକର ପ୍ରଥମ ଭାଗରେ ଓଡ଼ିଆ ଜାତିର ସାମରିକ ପତନ ଘଟିଲା, ଊନବିଂଶ ଶତକର ପ୍ରଥମ ଦଶକରେ ଓଡ଼ିଶାର ଜମିଦାରୀ ଓ ଜମିଜମାର ମାଲିକାନା ପଡ଼ୋଶୀ ବଙ୍ଗ ରାଜ୍ୟକୁ ହସ୍ତାନ୍ତର ହେବା ଅବସ୍ଥାରେ ଓଡ଼ିଶାର ଆର୍ଥନୀତିକ ବିପର୍ଯ୍ୟୟ ଆରମ୍ଭ ହେଲା । ଏହି ଶତକର ସପ୍ତମ ଦଶକରେ ଓଡ଼ିଆ ଭାଷା ବିଲୋପ ଚକ୍ରାନ୍ତରେ ଓଡ଼ିଆ ମୁହଁର ଭାଷା ଲିଭିଯିବାକୁ ବସିଲା ବେଳେ ଶତାବ୍ଦୀ ଶତାବ୍ଦୀ ଧରି ଶୋଇଥିବା ଓଡ଼ିଆ ଜାତିର ନିଦ ଭାଙ୍ଗିଗଲା । ନଅଙ୍କ ଦୁର୍ଭିକ୍ଷର ଧକ୍କା ଅନେକ ମାତ୍ରାରେ ଜାତିର ନିଦ ଭାଙ୍ଗିଦେଲା । ଏହି ସବୁ ପରିବର୍ତ୍ତନ ମଧ୍ୟ ଦେଇ ଓଡ଼ିଶାରେ ନବଜାଗରଣର ହାଓ୍ୱା ବହିବାକୁ ଆରମ୍ଭ କଲା । ଭାଷା, ସାହିତ୍ୟ ଓ ଜାତୀୟ ଜାଗରଣ କ୍ଷେତ୍ରରେ ପରିବର୍ତ୍ତନ ଆରମ୍ଭ ହେଲା । ସମାଜ, ସାହିତ୍ୟ ଓ ସାଧାରଣ ଜୀବନଯାତ୍ରାରେ ନାନାବିଧ ପରିବର୍ତ୍ତନ ଦେଖାଦେଲା । ସମସାମୟିକ ସାହିତ୍ୟରେ ଏ ସବୁର ପ୍ରତିଛବି ଦେଖିବାକୁ ମିଳେ ।

ଭିକାରୀ ଚରଣଙ୍କ ସୃଷ୍ଟି ସଂପଦର ସାମଜିକ ପୃଷ୍ଠଭୂମି ସଂପର୍କରେ ଡକ୍ଟର ଭାବଗ୍ରାହୀ ମିଶ୍ରଙ୍କ ମନ୍ତବ୍ୟ ପ୍ରଣିଧାନ୍ୟ ଯୋଗ୍ୟ । ''ଭିକାରୀ ଚରଣଙ୍କ ନାଟକାବଳୀ ଆଲୋଚନା କରିବା ପୂର୍ବରୁ ସାମାଜିକ ଅବସ୍ଥା ସଂପର୍କରେ ସୂଚନା ଦେବା ଉଚିତ୍ । କାରଣ ତାଙ୍କର ସାମାଜିକ ନାଟକ ଗୁଡ଼ିକ ତତ୍‌କାଳୀନ ଅବସ୍ଥାର ନିରାକରଣ ଦିଗରେ ଦୃଢ଼ ପଦକ୍ଷେପ । ଇଂରେଜୀ ଶିକ୍ଷାର ପ୍ରଭାବ ଫଳରେ ଓଡ଼ିଶାର ଯେଉଁ କେତେକ ଲୋକ ଶିକ୍ଷିତ ହେଲେ, ସେମାନେ ଏ ପ୍ରଦେଶର ପ୍ରାଚୀନ ଗୌରବକୁ

ଭୁଲିଗଲେ, ପୁରାପୁରି ହେଲେ ଅନୁକରଣ ସର୍ବସ୍ୱ । ଇଂରେଜୀ ପୋଷାକ ପରିଚ୍ଛଦ, ହାବଭାବ ଓ ରୀତିନୀତିକୁ ଅନୁକରଣ କରିବାକୁ ଲାଗିଲେ । ଫଳରେ ସେମାନେ ଏକ ସ୍ୱତନ୍ତ୍ର ଶ୍ରେଣୀ ସୃଷ୍ଟି କଲେ । ଏମାନଙ୍କର ଶିକ୍ଷାର ପ୍ରଥମ ଉଦ୍ଦେଶ୍ୟ ହେଲା ସରକାରୀ ଚାକିରୀ । ତେଣୁ ଏକ ନୂତନ କର୍ମଚାରୀ ଗୋଷ୍ଠୀ ସୃଷ୍ଟି ହେଲେ । ଓଡ଼ିଶାବାସୀ ଓ ଏହି ନବ୍ୟ ଶିକ୍ଷିତମାନଙ୍କ ମଧ୍ୟରେ ପ୍ରଭେଦର ପାଚେରୀ ଛିଡ଼ା ହେଲା । ଶିକ୍ଷାର ଅନୁଚିତ ଲାଭ ଉଠାଇବା ପାଇଁ ଯୌତୁକ ପ୍ରଥା ଦେଖାଦେଲା । ସାକୀ ଓ ସୁରାର ଉପାସନା ଏମାନଙ୍କର ଧର୍ମ ହୋଇ ପଡ଼ିଲା । ଅଭିଭାବକମାନଙ୍କ ପ୍ରତି ଅବଜ୍ଞା, ପରିଣୀତା ସ୍ତ୍ରୀ ପ୍ରତି ହତାଦର, ଅବୈଧ ପ୍ରଣୟ ଆଦି ବହୁ ଆନୁଷଙ୍ଗିକ ବିକ୍ରିୟା ଫଳରେ ସମାଜ ଜୀବନ ହେଲା ବିକଳାଙ୍ଗ । ଏହି ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ଯେଉଁମାନେ ଲେଖନୀ ଧରିଲେ, ସେମାନଙ୍କ ମଧ୍ୟରେ ଭିକାରୀ ଚରଣ ଅନ୍ୟତମ ।'' (ସାହିତ୍ୟ ଦୃଷ୍ଟି, ପୃ.୯୯-୧୦୦)

ଭିକାରୀ ଚରଣଙ୍କ ଲକ୍ଷ୍ୟ ଥିଲା ଓଡ଼ିଆ ଜାତିର ଉନ୍ନତି । ଏଣୁ ସେ ବିବିଧ ପନ୍ଥାରେ ଓଡ଼ିଆ ଜାତିର ଉତ୍ଥାନ ପାଇଁ ଚେଷ୍ଟା କରିଥିଲେ । କେବଳ ଅତୀତର ଗୌରବଗାଥା ଗାଇଲେ ଜାତିର ପେଟ ପୂରେନା, ବର୍ତ୍ତମାନ ହିଁ ବ୍ୟକ୍ତି ଜୀବନ ତଥା ଜାତି ଜୀବନ ପାଇଁ ମୂଲ୍ୟବାନ । ଭିକାରୀ ଚରଣ ତାଙ୍କ ସୃଷ୍ଟି ସମୂହରେ ସେଇ ପନ୍ଥାକୁ ଅବଲମ୍ବନ କରିଥିଲେ । ଶଲ୍ୟ ଚିକିତ୍ସା ପାଇଁ ଯେପରି ଶରୀରରେ ଅସ୍ତ୍ରଚାଳନା କରିବାକୁ ପଡ଼େ, ଏ ପ୍ରକାର ଆଘାତ ଯେପରି ଶରୀର ପାଇଁ ଆବଶ୍ୟକ ହୋଇଥାଏ, ଭିକାରୀ ଚରଣ ସେହିପରି ଜାତୀୟ ଜୀବନର ବିକାଶ ପାଇଁ ଜାତି ସଂପର୍କରେ ନାନା ଦୋଷ ତ୍ରୁଟିକୁ ପ୍ରଦର୍ଶନ କରାଇଛନ୍ତି । ଭିକାରୀ ଚରଣଙ୍କ ସୃଷ୍ଟିସଂପଦ ଆଜି ଆଦର ଲାଭ ନ କରୁଥିଲେ ବି ଜାତିର ସାମାଜିକ ଉନ୍ନତି ପଥରେ ବିଶେଷ ସହାୟତା ପ୍ରଦର୍ଶନ କରାଇଥାଏ । ସେ ଓଡ଼ିଆ ଲୋକମାନଙ୍କୁ କଟୁ ମନ୍ତବ୍ୟ ମାଧ୍ୟମରେ ଆଘାତ କରାଇଛନ୍ତି । କେବଳ ଅତୀତକୁ ନେଇ ବଞ୍ଚି ରହିବା ଜାତୀୟ ଉନ୍ନତିର ଲକ୍ଷଣ ନୁହେଁ ବୋଲି ବାରମ୍ବାର ସୂଚାଇଛନ୍ତି । ଅବଶ୍ୟ ଏ ସବୁକୁ କେତେକ ଭାବପ୍ରବଣ ବ୍ୟକ୍ତି ସହଜ ଭାବରେ ଗ୍ରହଣ କରିନେଇ ପାରି ନାହାନ୍ତି । ଭିକାରିଚରଣଙ୍କ ସୃଷ୍ଟି ସଂପଦକୁ ବିଚାର କଲାବେଳେ ସେ ସମୟ ଓ ତାଙ୍କ ପୂର୍ବବର୍ତ୍ତୀ ସମୟର ଦେଶ-କାଳ-ପାତ୍ର ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ; ତେବେ ଯାଇ ଭିକାରୀ ଚରଣଙ୍କ ସୃଷ୍ଟିର ଉଚିତ ମୂଲ୍ୟାୟନ ହୋଇପାରିବ । ଜାତିର ଅତୀତ ଓ ସେ ସମୟର ନିନ୍ଦାଗାନ କରିବା ଯଦି ଭିକାରୀ ଚରଣଙ୍କର ମୂଳ ଲକ୍ଷ୍ୟ ହୋଇଥାନ୍ତା ତେବେ ସାରାଜୀବନ ଜାତିର ଆର୍ଥନୀତିକ ଓ ସାମାଜିକ ଉନ୍ନତି ପାଇଁ ସେ ପ୍ରାଣପାତ କରି

ନଥାରେ । ଶସ୍ତା ପ୍ରଶଂସାରେ ପେଟ ପୂରେନା, ମୁଠାଏ ଦାନା ଓ ଖଣ୍ଡିଏ କନା ଯେକୌଣସି ମଣିଷ ପାଇଁ ପ୍ରଥମେ ଆବଶ୍ୟକ । ଭିକାରୀ ଚରଣ ସେଇ ଦାନା, କନା ସହିତ ବ୍ୟକ୍ତିକୁ ଆତ୍ମନିର୍ଭରଶୀଳ ହେବାପାଇଁ ତାଗିଦ କରିଛନ୍ତି, ପ୍ରେରଣା ଯୋଗାଇଛନ୍ତି । ତାଙ୍କର ବ୍ୟକ୍ତିମାନସ ହିଁ ତାଙ୍କର ସୃଷ୍ଟିସଂପଦରେ ବିକଶିତ ।

ଭିକାରୀ ଚରଣଙ୍କ ଜୀବିତାବସ୍ଥାରେ ଡକ୍ଟର ଭାବଗ୍ରାହୀ ମିଶ୍ର, ଡକ୍ଟର ଜାନକୀବଲ୍ଲଭ ମହାନ୍ତି, ଡକ୍ଟର ଜଗନ୍ନାଥ ମହାନ୍ତି ଓ ଡକ୍ଟର ହେମନ୍ତ କୁମାର ଦାସ ପ୍ରମୁଖ ତାଙ୍କ ସହିତ ପ୍ରତ୍ୟକ୍ଷ ସଂପର୍କ ସ୍ଥାପନ କରି ତାଙ୍କ ଠାରୁ ଅନେକ ତଥ୍ୟ ଆଣି ସମସାମୟିକ ଝଙ୍କାର, ଡଗର, ନବଜୀବନ ଓ ସମାଜରେ ଆଲୋଚନା ପ୍ରକାଶ କରିଥିଲେ । ପରବର୍ତ୍ତୀ ସମୟରେ ସେ ଅଲୋଚନାଗୁଡ଼ିକୁ ନିଜ ନିଜର ପ୍ରବନ୍ଧ ସଂକଳନରେ ସଙ୍କଳିତ କରିଛନ୍ତି । ଭିକାରୀ ଚରଣଙ୍କ ସଂପର୍କରେ ଆଲୋଚନା ପାଇଁ ଏସବୁ ଲେଖାକୁ ତଥ୍ୟ ଭାବରେ ଗ୍ରହଣ କରାଯାଇଛି । ଡକ୍ଟର ଭାବଗ୍ରାହୀ ମିଶ୍ର ଭିକାରୀ ଚରଣଙ୍କ ସ୍ମୃତିରୁ ଅନେକ ତଥ୍ୟକୁ ଖାତାରେ ଟିପିନେଇ ଅବିକଳ ପ୍ରକାଶ କରିଥିଲେ । ଭିକାରୀ ଚରଣଙ୍କ ନାଟକ ଆଲୋଚନା ପୂର୍ବରୁ ଡଃ ଭାବଗ୍ରାହୀ ମିଶ୍ରଙ୍କ ମତାମତକୁ ଏଠାରେ ଉଲ୍ଲେଖ କରାଯାଉଅଛି । ''ନାଟକ ଏକ ଯୌଥକଳା । ରଙ୍ଗମଞ୍ଚ, ଅଭିନୟ, ଦୃଶ୍ୟସଜ୍ଜା, ସଂଳାପ, ସଙ୍ଗୀତ, ସଂଯୋଜନା ଆଦିର ବିଚାର ନ କଲେ ନାଟକର ପ୍ରକୃଷ୍ଟ ସମାଲୋଚନା ସମ୍ଭବପର ନୁହେଁ । ଏଥିପାଇଁ ପ୍ରଚୁର ଉପାଦାନ ଆମ ନିକଟରେ ନାହିଁ । ଯେଉଁ କେତେକ ଉପାଦାନ ରହିଛି ତା ଉପରେ ଭିତ୍ତିକରି ସାହିତ୍ୟ ହିସାବରେ ନାଟକଗୁଡ଼ିକୁ ବିଚାର କରିବା ଛଡ଼ା ଅନ୍ୟ ଉପାୟ ନାହିଁ । ଭିକାରୀ ଚରଣଙ୍କ ନାଟକାବଳୀ ଆଲୋଚନା କାଳରେ କେତେକ ସମାଲୋଚକ ମତ ପ୍ରକାଶ କରିଥାନ୍ତି ଯେ, 'ସେ ରଙ୍ଗମଞ୍ଚ ସହିତ ପରିଚିତ ନଥିବାରୁ ନାଟକରେ ବହୁ ତ୍ରୁଟି ରହିଛି ।', କିନ୍ତୁ ଏପରି ମତ ଗ୍ରହଣୀୟ ନୁହେଁ । କାରଣ ସମାଲୋଚକମାନେ ତତ୍‌କାଳୀନ ମଞ୍ଚକୁ ବିଚାରକୁ ଆଣିବା ପରିବର୍ତ୍ତେ ଆଧୁନିକ ମଞ୍ଚ ଦୃଷ୍ଟିରୁ ନାଟକଗୁଡ଼ିକର ବିଚାର କରିଥାଆନ୍ତି । ଭିକାରୀ ଚରଣ ତତ୍‌କାଳୀନ ରଙ୍ଗମଞ୍ଚର ସୁବିଧା ସୁଯୋଗ ସହିତ ପ୍ରତ୍ୟକ୍ଷ ଭାବରେ ପରିଚିତ ଥିଲେ । କୁଶଳୀ ନିର୍ଦ୍ଦେଶକ ଶ୍ରୀ ସର୍ବେଶ୍ୱର ଚନ୍ଦ୍ର ଚନ୍ଦ, ଅଭିନେତା ଶ୍ରୀ ସାରଦା ଦଳବେହେରା ଓ ନାଟୁ ସରକାର ପ୍ରଭୃତିଙ୍କର ସହଯୋଗିତାରେ କଟକ ମ୍ୟୁନିସ୍‌ପାଲିଟି ଅସ୍ଥାୟୀ ରଙ୍ଗମଞ୍ଚରେ ଭିକାରୀ ବାବୁଙ୍କର ନାଟକଗୁଡ଼ିକ ଅଭିନୀତ ହୋଇଛି । ଏହାଛଡ଼ା କନିକା ରଜା ଓ ଗଡ଼ମଧୁପୁର ରଜାଙ୍କର ବ୍ୟକ୍ତିଗତ ମଞ୍ଚ, କୋଠପଦା ମଠର ମଞ୍ଚ ଓ ଜଗନ୍ନାଥ ବଲ୍ଲଭ (କଟକ)

ରଙ୍ଗମଞ୍ଚରେ ନାଟକଗୁଡ଼ିକ ଅଭିନୀତ ହୋଇ ପ୍ରଶଂସାଲାଭ କରିଛି । ନାଟକରେ ଥିବା ସଙ୍ଗୀତଗୁଡ଼ିକର ସ୍ୱର ସଂଯୋଜକ ଥିଲେ ଓଡ଼ିଶାର ଲବ୍ଧ ପ୍ରତିଷ୍ଠ ସଙ୍ଗୀତଶିଳ୍ପୀ ଶ୍ରୀଯୁକ୍ତ ବଳଦେବ ଚନ୍ଦ୍ର ଧୀର । ଏହିମାନଙ୍କୁ ନେଇ ଗଢ଼ିଉଠିଥିବା ନାଟ୍ୟ ସଂପ୍ରଦାୟର ପ୍ରଧାନ ଲକ୍ଷ୍ୟ ଥିଲା ନାଟ୍ୟାମୋଦ ବ୍ୟବସାୟ ମନୋବୃତ୍ତି ନୁହେଁ ।'' (ସାହିତ୍ୟ ଦୃଷ୍ଟି, ପୃ. ୧୦୧-୧୦୨)

ଖ୍ରୀ: ୧୯୦୧ ରେ 'କଟକ ବିଜୟ' ନାଟକ ପ୍ରକାଶିତ ହେଲା । ମାତ୍ର ଏହାପୂର୍ବରୁ ଅନେକ ଆଗରୁ ଏ ନାଟକ ରଚନା କରାଯାଇଥିଲା । ଲେଖକ କଟକକୁ ପ୍ରବେଶିକା ପରୀକ୍ଷା ଦେବାକୁ ଆସି ବାରବାଟୀ କିଲ୍ଲା ଦେଖିବାକୁ ଯାଇଥିଲେ । ଇତିହାସର ମୂକ ସାକ୍ଷୀ ଭଗ୍ନ ବାରବାଟୀ ତରୁଣ ଲେଖକ ମନରେ ଭାବାନ୍ତର ସୃଷ୍ଟି କଲା । ସେତେବେଳକୁ ଭିକାରି ଚରଣ ୧୯/୨୦ ବର୍ଷର ଯୁବକ । ଏହି ନାଟକଟି ରେଭେନ୍‌ସା କଲେଜ ଛାତ୍ରମାନଙ୍କ ଦ୍ୱାରା ଅଭିନୀତ ହୋଇଥିଲା । ଅଭିନୟ ପୂର୍ବରୁ ପୋଲିସ କର୍ତ୍ତୃପକ୍ଷଙ୍କ ଅନୁମତି ଲୋଡ଼ାଯାଇଥିଲା । ନାଟକର କେତେକ ଉଦ୍‌ବୋଧନମୂଳକ ସଂଳାପ କାଟି ଦେବାପାଇଁ ପୋଲିସ୍ କହିଥିଲେ । ପୋଲିସ୍ ପାଖରେ ଏ ସଂପର୍କରେ ଉଦ୍ୟୋକ୍ତାମାନେ ସମ୍ମତ ହୋଇଥିଲେ ମଧ୍ୟ ଅଭିନୟ ସମୟରେ ଉଦ୍ୟୋକ୍ତାମାନେ ପ୍ରତିଶ୍ରୁତି ପାଳନ କରି ନଥିଲେ, ତଥାପି ପୋଲିସ କିଛି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିନଥିଲା ।

ଭିକାରୀ ଚରଣଙ୍କ ପୂର୍ବରୁ ଓଡ଼ିଶାରେ ନାଟକ ରଚନାର ପରମ୍ପରା ବ୍ୟାପକ ହୋଇନଥିଲା । ଏଣୁ ତାଙ୍କ ସମ୍ମୁଖରେ ତାଙ୍କ ପୂର୍ବବର୍ତ୍ତୀ ନାଟ୍ୟକାରଙ୍କର ନାଟକ, ଯାତ୍ରା ଓ ରାସଲୀଳା ତଥା ବଙ୍ଗଳା ନାଟକ ଆଦର୍ଶ ଭାବରେ ରହିଥିଲା । ତାଙ୍କ ସମ୍ମୁଖରେ ଓଡ଼ିଶାର ବିଧିବଦ୍ଧ ଇତିହାସ ବା କୌଣସି ପ୍ରାମାଣିକ ତଥ୍ୟ ନଥିଲା । ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ଇତିହାସ ଓ ପ୍ରଚଳିତ କିଂବଦନ୍ତୀ ହିଁ ତାଙ୍କ ପାଇଁ ସମ୍ବଳ ଥିଲା । ଏଣୁ ତାଙ୍କ ନାଟକରେ ଐତିହାସିକ ତଥ୍ୟ ଅନୁସନ୍ଧାନ କରିବା ପୂର୍ବରୁ ତାଙ୍କ ରଚନାର ପୃଷ୍ଠଭୂମି ସଂପର୍କରେ ଦୃଷ୍ଟିଦେବା ନିତାନ୍ତ ଆବଶ୍ୟକ । କେତେକ ଆଲୋଚକ ଲେଖିଛନ୍ତି ଯେ ସେ ରାମଶଙ୍କରଙ୍କର ଜୁନିଅର ଓକିଲ ଥିଲେ ମାତ୍ର କଟକ ବିଜୟ ନାଟକ ରଚନା ବେଳକୁ ଭିକାରୀ ଚରଣ ମାଟ୍ରିକ ପାଶ କରି କଲେଜରେ ପଢୁଥିଲେ । ପୁଣି ତାଙ୍କ ନାଟକରେ ଗ୍ରାମ୍ୟ ଶବ୍ଦର ବହୁଳ ବ୍ୟବହାରର କାରଣ ନିର୍ଦ୍ଦେଶ କରି ଆଲୋଚକ କହିଛନ୍ତି ଯେ ଭିକାରୀ ଚରଣ ଓକିଲ ଥିବାରୁ ତାଙ୍କ ମହକିଲମାନଙ୍କ ଠାରୁ ଗ୍ରାମ୍ୟ ଶବ୍ଦ ସଂପର୍କରେ ବିଶେଷ ଅବଗତ ହୋଇଥିବେ । ସେମାନେ ଭିକାରୀ

ଚରଣଙ୍କ ଜୀବନ ସଂପର୍କରେ ସ୍ପଷ୍ଟ ଧାରଣା ଆଣି ନପାରିଥିବାରୁ ଏଭଳି ବିଭ୍ରାନ୍ତିର ସମ୍ମୁଖୀନ ହୋଇଛନ୍ତି । ଭିକାରୀ ଚରଣଙ୍କ ବାଲ୍ୟ ଜୀବନ ଓ କର୍ମମୟ ଜୀବନର ଅନେକ ସମୟ ଗ୍ରାମ୍ୟ ପରିବେଶରେ ହିଁ କଟିଛି । ଏ ସବୁ ଦୃଷ୍ଟିକୋଣରୁ ଭିକାରୀ ଚରଣଙ୍କ ସୃଷ୍ଟି ସମୂହକୁ ବିଚାର କରାଯିବା ଆବଶ୍ୟକ ।

ଭିକାରୀ ଚରଣଙ୍କ ନାଟକ ସଂପର୍କରେ ଆଲୋଚନା କରିବାକୁ ଯାଇ ଡକ୍ଟର ଜାନକୀବଲ୍ଲଭ ମହାନ୍ତି ଲେଖିଛନ୍ତି "ଭିକାରୀ ଚରଣଙ୍କ  ନାଟକାବଳୀ ଆଜି ଆଉ ଅଭିନୀତ ହେଉନାହିଁ । ବହୁ ପୂର୍ବେ ପ୍ରକାଶିତ ହୋଇଥିବା ନାଟକାବଳୀ ମଧ ଦୁଷ୍ପ୍ରାପ୍ୟ । ଏତଦ୍‌ସତ୍ତ୍ୱେ ଆଧୁନିକ ଓଡ଼ିଆ ନାଟକର ଶୈଶବାବସ୍ଥାରେ ତାହାଙ୍କ ସାହିତ୍ୟିକ ଦାନର ଯେ ଏକ ବିଶେଷ ଗୌରବ ଅଛି, ଏହା ସ୍ୱୀକାର ନକଲେ ଲେଖକଙ୍କ ପ୍ରତି ଅବିଚାର କରାହେବ ।" (ସାହିତ୍ୟ ସମୀକ୍ଷଣ, ପୃ.୨୪୪)

## ଭିକାରୀ ଚରଣଙ୍କ ନାଟକାବଳୀର ସଂକ୍ଷିପ୍ତ ପରିଚୟ :

କଟକ ବିଜୟ (୧୯୦୧) : ଏହି ନାଟକଟିର ପୁରାନାମ 'ଇଂରେଜ କର୍ତ୍ତୃକ କଟକ ବିଜୟ ନାଟକ' । ଏହାର ପ୍ରଥମ ସଂସ୍କରଣ ୧୯୦୧ ମସିହାରେ ଓ ଦ୍ୱିତୀୟ ସଂସ୍କରଣ ୧୯୧୫ ମସିହାରେ, ଲେଖକଙ୍କ ନିଜ ଦ୍ୱାରା ପ୍ରକାଶିତ । ଦ୍ୱିତୀୟ ସଂସ୍କରଣ କଟକ ପ୍ରିଣ୍ଟିଂ କମ୍ପାନୀରେ ମୁଦ୍ରିତ । ଏହି ନାଟକଟିକୁ ମୟୂରଭଞ୍ଜ ମହାରାଜା ଶ୍ରୀଯୁକ୍ତ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କୁ ଉତ୍ସର୍ଗ କରାଯାଇଅଛି । ନାଟକର ମୁଖବନ୍ଧ ରଚନା କରି ଅଭିମତ ପ୍ରଦାନ କରିଥିଲେ ଭକ୍ତକବି ମଧୁସୂଦନ ରାଓ । ଗୋଟିଏ ସାହିତ୍ୟିକ ଦଲିଲ ଭାବରେ ଏହାର ଯଥେଷ୍ଟ ଗୁରୁତ୍ୱ ରହିଛି ।

**ଅଭିମତ**

'କଟକ-ବିଜୟ-ନାଟକ' ଶ୍ରୀଯୁକ୍ତ ବାବୁ ଭିକାରୀ ଚରଣ ପଟ୍ଟନାୟକ ମହାଶୟଙ୍କର ପ୍ରଥମୋଦ୍ୟମ । ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଓ ସେଥିସଙ୍ଗେ ରାଜଧାନୀ କଟକ ବ୍ରିଟିଶ୍‌ମାନଙ୍କର କରଗତ ହୋଇଥିବା ଐତିହାସିକ ଘଟନାକୁ ଅବଲମ୍ବନ କରି ଏହି ନାଟକ ଖଣ୍ଡିକ ଲିଖିତ ହୋଇଅଛି । ପୁସ୍ତକ ମଧ୍ୟରେ କେତେଗୁଡ଼ିଏ ସ୍ୱଭାବ-ସଙ୍ଗତ ଚରିତ୍ର-ଚିତ୍ର ଦେଖି ପ୍ରୀତ ହେଲି । ଲେଖକ ଏହି ପ୍ରଥମ ପ୍ରୟାସରେ ଯେଉଁ କ୍ଷମତା ଓ କୃତିତ୍ୱ ଦେଖାଇ ଅଛନ୍ତି, ତାହା ପ୍ରଶଂସନୀୟ । ଲେଖକଙ୍କର ରୁଚି ମଧ ପ୍ରଶସ୍ତ ଓ ପବିତ୍ର । ଶୂର ବାଲାଜି ଏବଂ ପତିପ୍ରାଣା ପଦ୍ମାବାଇଙ୍କର ଚିତ୍ରଦ୍ୱୟ ମନୋଜ୍ଞ ହୋଇଅଛି । ଲେଖକଙ୍କର ଭାଷା ଅଧିକାଂଶ

ଛନ୍ଦରେ ଯଥାଯଥ ହୋଇଅଛି । କିନ୍ତୁ ତାଙ୍କର ଅମିତ୍ରାକ୍ଷର ପଦ୍ୟରଚନାରେ କେତେକ ବ୍ୟତିକ୍ରମ ଲକ୍ଷିତ ହେଲା । ଯାହାହେଉ ସେ ଅନିୟମ ବା ବ୍ୟତିକ୍ରମ ନିତାନ୍ତ ଦୋଷାବହ ନୁହେଁ । ଏପରି ଅନିୟମ କେତେକ ପ୍ରସିଦ୍ଧ ବଙ୍ଗୀୟ ନାଟକରେ ମଧ୍ୟ ଲକ୍ଷିତ ହେଉଅଛି ।

ପରିଶେଷରେ ବକ୍ତବ୍ୟ ଏହି ଯେ ପୁସ୍ତକ ଖଣ୍ଡିକ ସର୍ବଥା ଆଦରଣୀୟ ଏବଂ ମୁଁ ଆଶାକରେ ଉତ୍କଳ-ସାହିତ୍ୟ-ହିତୈଷି ମହୋଦୟବୃନ୍ଦ ତାହାପ୍ରତି ଆଦର ଓ ଅନୁଭବ ପ୍ରକାଶ କରି ନବୀନ ଲେଖକଙ୍କୁ ଉତ୍ସାହିତ କରିବେ ।

ଶ୍ରୀ ମଧୁସୂଦନ ରାଓ ।

'କଟକ ବିଜୟ ନାଟକ'ର ଦ୍ୱିତୀୟ ସଂସ୍କରଣରେ ଭିକାରୀ ଚରଣ ଏ ପୁସ୍ତକ ସଂପର୍କରେ ଓ ସେ ସମୟକୁ ପ୍ରକାଶିତ ତାଙ୍କର ଅନ୍ୟାନ୍ୟ ପୁସ୍ତକ ସଂପର୍କରେ ଏକ ବିଜ୍ଞାପନ ପ୍ରକାଶ କରିଥିଲେ । ଭବିଷ୍ୟତରେ ଗବେଷଣା ପାଇଁ ଏହାର ଯଥେଷ୍ଟ ଆବଶ୍ୟକତା ରହିଛି । ନିମ୍ନରେ ତାହା ପ୍ରଦାନ କରାଗଲା ।

କଟକ ବିଜୟ ନାଟକ

ପ୍ରଣେତା- ଶ୍ରୀ ଭିକାରୀ ଚରଣ ପଟ୍ଟନାୟକ

୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଓ ସେଥିସଙ୍ଗେ ରାଜଧାନୀ କଟକ ବ୍ରିଟିଶମାନଙ୍କର କରଗତ ହୋଇଥିବା ଐତିହାସିକ ଘଟଣାକୁ ଅବଲମ୍ବନ କରି ଏହି ନାଟକ ଖଣ୍ଡି ଲିଖିତ ହୋଇଅଛି । ଏଥିରେ ମରହଟ୍ଟା ଶାସନାଧୀନରେ ଉତ୍କଳବାସୀଙ୍କର ଦୁରବସ୍ଥା ଓ ସେମାନଙ୍କର ଆର୍ଥିକ ଓ ମାନସିକ ଅବସ୍ଥା ପ୍ରଭୃତି ମଧ୍ୟ ଉତ୍ତମ ରୂପେ ବର୍ଣ୍ଣିତ ଅଛି । ମୂଲ୍ୟ ଆଠଅଣା । ଏହି ପୁସ୍ତକ ଓ ଆମ୍ଭର ନିମ୍ନଲିଖିତ ଅନ୍ୟ ପୁସ୍ତକମାନ ସହର କଟକ ପୋ.ଅ. କଟକ ଠିକଣାରେ ପ୍ରିଣ୍ଟିଂ କଂପାନୀ, ସାହିତ୍ୟ ପ୍ରେସ, ଚନ୍ଦ୍ରୋଦୟ ପୁସ୍ତକାଳୟମାନଙ୍କରେ ଏବଂ ଶ୍ରୀଯୁକ୍ତ ବାବୁ ରାଧାକୃଷ୍ଣ ବୋଷ୍ ଏମ୍. ଏ.ଙ୍କ ପୁସ୍ତକ ଦୋକାନରେ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି ।

ରତ୍ନମାଳୀ ନାଟକ-ଦଶଅଣା, ସଂସାରଚିତ୍ର ନାଟକ-ଆଠଅଣା, କରଣ ସାଆନ୍ତଙ୍କ ଢମ-ଏକଅଣା, ସାଆନ୍ତିଆ ବାହା-ଏକଅଣା, ମାନନୀୟ-ଦୁଇପଇସା, ଭୋଟ ସୁମାରି-ଏକ ପଇସା, ଦେୱାନୀ କାର୍ଯ୍ୟବିଧି ଆଇନର କେତେ ଅଂଶ ପ୍ରଥମ ଓ ଦ୍ୱିତୀୟ ଖଣ୍ଡ-ଦଶଅଣା । ଶ୍ରୀ ଭିକାରୀ ଚରଣ ପଟ୍ଟନାୟକ, ଓକିଲ, କଟକ ।

ଏ ନାଟକର ପୃଷ୍ଠଭୂମି ସଂପର୍କରେ ଡକ୍ଟର ଭାବଗ୍ରାହୀ ମିଶ୍ର ଲେଖିଛନ୍ତି : ''ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଭାରତର ରାଜନୈତିକ, ସାମାଜିକ ତଥା ଧାର୍ମିକ କ୍ଷେତ୍ରରେ ଯେଉଁ ଅଭ୍ୟୁଦୟର ସୂଚନା ମିଳିଥିଲା, ତାହାର ପ୍ରଭାବ ଓ ପରିଣାମ ସଂପର୍କରେ ଭିକାରୀ ଚରଣ ସଚେତନ ଥିଲେ । ଭାରତୀୟ ଲୋକମାନସରେ ଏକ ବଳିଷ୍ଠ ରାଜନୈତିକ ଚିନ୍ତାଧାରାର ସୂତ୍ରପାତ କରିବା ପାଇଁ ସାମାଜିକ ସଂସ୍କାର ପରିବର୍ତ୍ତନ ଯେ ଅବଶ୍ୟମ୍ଭାବୀ, ଏକଥା ସେତେବେଳର ସମସ୍ତ ଚିନ୍ତାନାୟକମାନେ ଅନୁଭବ କରୁଥିଲେ । ବଙ୍ଗ-ପ୍ରଦେଶରେ ରାଜା ରାମମୋହନ ରାୟଙ୍କ ନେତୃତ୍ୱ ଭାରତର ପ୍ରତ୍ୟେକ ଚିନ୍ତାଶୀଳ ଜନନାୟକଙ୍କୁ ଅନୁପ୍ରାଣିତ କରିଥିଲା । କଟକ ବିଜୟ ନାଟକରେ ଭିକାରିଚରଣ ମୁଖ୍ୟତଃ ଏହି ଚିନ୍ତାଧାରାର ପ୍ରତିଧ୍ୱନି କରିଛନ୍ତି ।''

ଅନେକ ଆଲୋଚକ ଭିକାରୀ ଚରଣଙ୍କ 'କଟକ ବିଜୟ ନାଟକ'ର ଐତିହାସିକତା ସଂପର୍କରେ ଆଲୋଚନା କରିଛନ୍ତି । ଏହି ନାଟକର ପ୍ରଧାନ ଲକ୍ଷ୍ୟ ଥିଲା ଓଡ଼ିଶାବାସୀଙ୍କର ଆର୍ଥିକ ଓ ମାନସିକ ଅବସ୍ଥାର ଚିତ୍ର ପ୍ରଦାନ କରିବା ଓ ଓଡ଼ିଶାର ଅତୀତ ଗୌରବକୁ ଭିନ୍ନ ଶୈଳୀରେ ପ୍ରକାଶ କରିବା । ଡକ୍ଟର ହେମନ୍ତକୁମାର ଦାସ ଭିକାରୀ ଚରଣଙ୍କ ନାଟକ ସଂପର୍କରେ 'ଓଡ଼ିଆ ନାଟକର ଉଦ୍‌ଭବ ଓ ବିକାଶ' ପୁସ୍ତକରେ ବ୍ୟାପକ ଭାବରେ ଆଲୋଚନା କରିଛନ୍ତି । କଟକ ବିଜୟ ସମ୍ପର୍କରେ ସେ କହନ୍ତି ''ଏହା ସତ୍ୟ ଯେ କଟକ ବିଜୟର ଭାଷା ସତେ ଉଦ୍ଦୀପକ ନୁହେଁ, ମାତ୍ର ଭାବଟି ଯେ ଜାତୀୟତା ଦ୍ୟୋତକ ଏଥିରେ ସନ୍ଦେହ ନାହିଁ । ପ୍ରତ୍ୟେକ ଲେଖକଙ୍କର ଆତ୍ମାଭିବ୍ୟକ୍ତିର ନିଜସ୍ୱ ଶୈଳୀ ଥାଏ । 'କଟକ ବିଜୟ'ର ଦୁର୍ବଳ ଜାତୀୟତାକୁ ତେଣୁ ଲେଖକଙ୍କର ଶୈଳୀଗତ ଦୁର୍ବଳତା କୁହାଯାଇପାରେ । ତା ଛଡ଼ା ସେତେବେଳେ ପ୍ରବଳ ପରାକ୍ରାନ୍ତ ବ୍ରିଟିଶ ସରକାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସେତେ ସହଜସାଧ୍ୟ ବ୍ୟାପାର ନଥିଲା ।''

ଡକ୍ଟର ନୀଳାଦ୍ରିଭୂଷଣ ହରିଚନ୍ଦନ ତାଙ୍କ ସନ୍ଦର୍ଭ 'ଓଡ଼ିଆ ନାଟକରେ ଇତିହାସର ପଦଧ୍ୱନି' ପୁସ୍ତକରେ ଲେଖିଛନ୍ତି ''ଏହି ଐତିହାସିକ ଘଟଣାଟି ଭିକାରୀ ଚରଣଙ୍କ 'କଟକ ବିଜୟ ନାଟକ'ରେ ରୂପାୟିତ । ଏହା ଏକ ଦ୍ୱନ୍ଦ୍ୱ ଉତ୍କଣ୍ଠାହୀନ ଅନାଟକୀୟ ଘଟଣା ହେଲେ ମଧ୍ୟ ନାଟ୍ୟକାର ଏହାକୁ ଯଥା ସମ୍ଭବ ନାଟକୀୟ କରି ତୋଳିଛନ୍ତି । ନାଟ୍ୟସୃଷ୍ଟିର ପ୍ରୟୋଜନରେ ସଂକ୍ଷିପ୍ତ ଘଟଣାକୁ ଦୀର୍ଘ କରିବାକୁ ଯାଇ ସେ କଳ୍ପନାର ସାହାଯ୍ୟ ନେଇଛନ୍ତି । ଆନୁଷଙ୍ଗିକ ଭାବେ ତତ୍କାଳୀନ ସମାଜ ଜୀବନର ପୁନର୍ନିର୍ମାଣ ଘଟିଛି ।'' (ପୃ. ୮୪)

ସେ ସମୟର ଦୃଷ୍ଟିକୋଣରୁ ଭିକାରୀ ଚରଣ ନାଟକଟିକୁ ଯଥା ସମ୍ଭବ ଜୀବନ୍ତ କରିବା ପାଇଁ ହାସ୍ୟରସ ବ୍ୟଙ୍ଗ ବିଦ୍ରୂପ ପ୍ରୟୋଗର ସାହାଯ୍ୟ ନେଇଛନ୍ତି । କଟକ ସହରର କଟକୀ ଭାଷାକୁ ଉପସ୍ଥାପନ ଓ ଆଞ୍ଚଳିକ ଭାଷା ପ୍ରୟୋଗ ଦ୍ୱାରା ହାସ୍ୟରସ ମାଧ୍ୟମରେ ପାତ୍ରମୁଖୀ ଭାଷା ପ୍ରଦାନ ପାଇଁ ଚେଷ୍ଟା କରିଛନ୍ତି ।

୨-ନନ୍ଦିକେଶ୍ୱରୀ(୧୯୧୫) : କବିବର ରାଧାନାଥଙ୍କ କାବ୍ୟର ଅବଲମ୍ବନରେ ରଚିତ ଏହି ନାଟକରେ କଥାବସ୍ତୁରେ କୌଣସେ ପରିବର୍ତ୍ତନ କରାଯାଇ ନାହିଁ । ଏହି ନାଟକ ରଚନା ପାଇଁ ଲେଖକ କବିବର ରାଧାନାଥଙ୍କ ପୁତ୍ର ଶ୍ରୀ ଶଶୀଭୂଷଣ ରାୟଙ୍କ ଠାରୁ ଅନୁମତି ଆଣିଥିଲେ : "ମୋହର ପରମାରାଧ ସ୍ୱର୍ଗତ ପିତୃଦେବଙ୍କ ରଚିତ 'ନନ୍ଦକେଶ୍ୱରୀ' କାବ୍ୟଟିକୁ ନାଟକାକାରରେ ପ୍ରକାଶ କରିବାକୁ ବାବୁ ଭିକାରୀ ଚରଣ ପଟ୍ଟନାୟକଙ୍କୁ ଆଗ୍ରହ ସହକାରେ ଅନୁମତି ଦେଲି ।

ଶଶୀଭୂଷଣ ରାୟ ୦୬.୧୨.୧୯୧୫"

ଏହି ନାଟକଟି ୧୯୧୬ରେ କଟକର 'ଉଷା' ପେଣ୍ଡାଲରେ ଅଭିନୀତ ହୋଇଥିଲା । କାବ୍ୟଟିକୁ ନାଟ୍ୟରୂପ ଦେଲାବେଳେ ଭିକାରୀ ଚରଣ ନାଟକଟିକୁ ସଙ୍ଗୀତ ବହୁଳ କରି ପକାଇଛନ୍ତି । ଏହି ନାଟକରେ ୧୯ଟି ସଙ୍ଗୀତ ସ୍ଥାନ ପାଇଛି । ସମୁଦାୟ ନାଟକଟି ପାଞ୍ଚଗୋଟି ଅଭିନୟ ଓ ଚବିଶ ଗୋଟି ଦୃଶ୍ୟରେ ବିଭକ୍ତ । ନନ୍ଦିକେଶ୍ୱରୀ କାହାଣୀଟି ବି ରାଧାନାଥଙ୍କର ନିଜସ୍ୱ କାହାଣୀ ନୁହେଁ, ଏହାର କଥାବସ୍ତୁ 'ଓଭିଡ୍‌ଙ୍କର ମେଟାମରଫୋସି'ରୁ ଗୃହୀତ । ମାତ୍ର ଓଡ଼ିଶା ଇତିହାସର କେତେ ଚରିତ୍ର ଓ କଟକ ନିକଟସ୍ଥ ମହାନଦୀରେ ନନ୍ଦିକେଶ୍ୱରୀ ପଠାକୁ ଆଧାର କରି ରାଧାନାଥ ଓଡ଼ିଶାର କିମ୍ବଦନ୍ତୀ ଓ ଇତିହାସ ସହିତ ସଂପର୍କ ସ୍ଥାପନର ପ୍ରୟାସ କରିଥିଲେ । ନାଟକରେ ସେ ସବୁକୁ ପାଳନ କରାଯାଇଥିଲେ ବି ଲେଖକ ନନ୍ଦିକା ଚରିତ୍ର ପ୍ରତି ଅଧିକ ଆକର୍ଷିତ ହୋଇଥିବାରୁ ନନ୍ଦିକା ମୁଖରେ ଦୀର୍ଘ ସ୍ୱଗତ ସଂଳାପ ତଥା ଅନେକ ସ୍ଥାନରେ ଦୀର୍ଘ ସଂଳାପ ପ୍ରଦାନ କରିଛନ୍ତି ।

ନାଟ୍ୟକାର ଅନେକତ୍ର ଚରିତ୍ରମାନଙ୍କୁ ସ୍ୱଗତୋକ୍ତି ଦ୍ୱାରା ଏକମୁଖୀ କରାଇଥିବାରୁ ନାଟକୀୟ ଦ୍ୱନ୍ଦ୍ୱ ପ୍ରଦର୍ଶନ କରାଇବାରେ ଅସଫଳ ହୋଇଛନ୍ତି । ପୁଣି ନାଟକଟି ରାଧାନାଥଙ୍କର ଏକ ବହୁଚର୍ଚ୍ଚିତ କାବ୍ୟର ନାଟ୍ୟରୂପ ହୋଇଥିବାରୁ ଏହାର ଧାରା ପରିବର୍ତ୍ତନ ସମ୍ଭବ ହୋଇପାରିନାହିଁ ।

୩-ରତ୍ନମାଳୀ-(୧୯୧୫) : ରତ୍ନମାଳୀ ନାଟକଟି ୧୯୧୫ ମସିହାରେ ନିଜେ ଲେଖକଙ୍କ ଦ୍ୱାରା ପ୍ରକାଶିତ ଓ ମୁକୁର ପ୍ରେସରେ ବ୍ରଜସୁନ୍ଦର ଦାସଙ୍କ ଦ୍ୱାରା

ମୁଦ୍ରିତ । ଏହି ନାଟକ ୧୯୧୬ରେ କନିକା ଗଡ଼ରେ ଅଭିନୀତ ହୋଇଥିବାର ଜଣାଯାଏ । ତାଳଚେରର ରଜା ଶ୍ରୀଯୁକ୍ତ କିଶୋରଚନ୍ଦ୍ର ହରିଚନ୍ଦନଙ୍କୁ ଏହା ଉତ୍ସର୍ଗ କରାଯାଇଅଛି । କୌଣସି ସମୟରେ ରାଜା ତାଙ୍କୁ ଉତ୍ସାହିତ କରିଥିବାରୁ କୃତଜ୍ଞତା ସ୍ୱରୂପ ଏହା ଉତ୍ସର୍ଗ କରାଯାଇଛି । ଏହି ନାଟକର ବିଜ୍ଞାପନ ୧୯୧୫ରେ ଦ୍ୱିତୀୟ ବାର ପ୍ରକାଶିତ କଟକ ବିଜୟ ନାଟକରେ ପ୍ରଦତ୍ତ -

"ରତ୍ନମାଳୀ ନାଟକ

ପ୍ରଣେତା-ଶ୍ରୀ ଭିକାରୀ ଚରଣ ପଟ୍ଟନାୟକ

ରତ୍ନମାଳୀ ଜଣେ ରାଜକନ୍ୟା । ଅତି ଶୈଶବ କାଳରେ ତାହାର ପିତା ଶତ୍ରୁ ହସ୍ତରେ ନିହତ ହେଲେ । ମାତା ପିତାଙ୍କର ସହମୃତା ହେଲେ । ରାଜ୍ୟ ଶତ୍ରୁ ହସ୍ତଗତ ହେଲା । ମନ୍ତ୍ରୀ ଗୋବର୍ଦ୍ଧନ ନିଜ ପରିବାରବର୍ଗଙ୍କ ସହିତ ଉକ୍ତ ଶିଶୁଟି ଘେନି ପଳାୟନ କଲେ । ଅରଣ୍ୟ ମଧ୍ୟରେ ଏକ ସ୍ଥାନରେ ରହି ଶିଶୁଟିକୁ ବଢ଼ାଇବାକୁ ଲାଗିଲେ ଓ କ୍ରମେ କ୍ରମେ ତାହାକୁ ନାନା ବିଦ୍ୟାରେ ଦୀକ୍ଷିତା କଲେ । ପୁଣି ଗୋବର୍ଦ୍ଧନ ବାଟଧାଡ଼ି ଆରମ୍ଭ କଲେ । ବାଟୋଇ ପାଇଲେ ତାହାର ପ୍ରାଣ ସଂହାର କରି ଅର୍ଥ ସଂଗ୍ରହ କରିବା ତାହାଙ୍କର ବୃତ୍ତି ହେଲା । ଜଣେ ବାଟୋଇ ସୁଦାମଙ୍କ ସହିତ ରତ୍ନମାଳୀ ଚାଲିଗଲା । ଦୈବକ୍ରମେ ସୁଦାମ ଯାଇ ଏକ ରାଜାଙ୍କ ରାଜ୍ୟରେ ବନ୍ଦୀ ହେଲେ । ସବଂଶରେ ଗୋବର୍ଦ୍ଧନଙ୍କ ପ୍ରତି ସେହି ରାଜାଙ୍କ ପ୍ରାଣଦଣ୍ଡର ଆଜ୍ଞା ହେଲା । ରତ୍ନମାଳୀ ଅତି ଆଶ୍ଚର୍ଯ୍ୟ କୌଶଳ ଦେଖାଇ ସମସ୍ତଙ୍କ ପ୍ରାଣ ରକ୍ଷାକଲେ । ରତ୍ନମାଳୀର କୌଶଳ ଓ ନିର୍ମଳ ଚରିତ୍ର, ସୁଦାମର ବନ୍ଧୁ ପ୍ରେମ ଓ ଗୋବର୍ଦ୍ଧନର ପ୍ରଭୁଭକ୍ତି ବିଷୟଗୁଡ଼ିକ ଏହି ନାଟକରେ ଯେପରି ଚିତ୍ରିତ ହୋଇଅଛି ତାହା ଅତି ମନୋହର ।

'ରତ୍ନମାଳୀ' ନାଟକ ଅମିତ୍ରାକ୍ଷର ଛନ୍ଦରେ ରଚିତ ଓ ପାଞ୍ଚଗୋଟି ଅଭିନୟରେ ସମାପ୍ତ । ଏହି ଘଟଣା-ପ୍ରଧାନ କାଳ୍ପନିକ ନାଟକରେ ଏକ ରୋମାଞ୍ଚକର ପରିବେଶ ସୃଷ୍ଟି ହୋଇଛି । ଏହାର କଥାବସ୍ତୁ ଉପସ୍ଥାପନରେ ନାଟ୍ୟକାର ଯଥେଷ୍ଟ ସାବଧାନତା ଅବଲମ୍ବନ କରିଛନ୍ତି । ଏହାର କଥାବସ୍ତୁ ସୁପରିକଳ୍ପିତ ଓ ନାଟ୍ୟମୂଲ୍ୟ ପ୍ରଦାନରେ ସମର୍ଥ । କାଳ୍ପନିକ ନାଟକରେ କଥାବସ୍ତୁ ଉପସ୍ଥାପନର ସ୍ୱାଧୀନତା ଥିବାରୁ ଲେଖକ ଏଥିରେ ନିଜର ହାତର କୌଶଳ ଦେଖାଇ ପାରିଛନ୍ତି । ନାରୀ ଚରିତ୍ରର ପ୍ରାଧାନ୍ୟ ପ୍ରଦର୍ଶନ କରିବା ଲେଖକଙ୍କର ମୂଳ ଲକ୍ଷ୍ୟ । ସଙ୍ଗୀତ ବହୁଳତା ଓ ବହୁ ଚରିତ୍ରର ସମାବେଶ ସେ ସମୟର ଯାତ୍ରାର ପ୍ରଭାବ ବୋଲି ଅନୁମାନ କରାଯାଏ ।

୪-ସଂସାର ଚିତ୍ର(୧୯୧୫) : ଏହି ନାଟକଟି ଭିକାରୀ ଚରଣଙ୍କର ଅନ୍ୟତମ ସଫଳ ସୃଷ୍ଟି ହେଲେ ମଧ ଏହାର ଦ୍ୱିତୀୟ ମୁଦ୍ରଣ ଦୀର୍ଘ ୪୫ ବର୍ଷ ପରେ ୧୯୬୦ରେ ଆତ୍ମପ୍ରକାଶ ଲାଭ କଲା । ଏହାର ପ୍ରକାଶକ ଦାୟିତ୍ୱ ବି ନିଜେ ଲେଖକ ନେଇଛନ୍ତି । ଏହି ନାଟକଟି ମଧୁପୁରର ପଟ୍ଟାୟତ ଶ୍ରୀଯୁକ୍ତ ସାମନ୍ତ ବଳଦେବ ଚନ୍ଦ୍ର ଧୀରଙ୍କୁ ଉତ୍ସର୍ଗ କରାଯାଇଛି ।

ସଂସ୍କାରକ ଭିକାରୀ ଚରଣଙ୍କ ଏହା ଯୌତୁକ ବିରୁଦ୍ଧରେ ଏକ ସଫଳ ଅଭିଯାନ । ଜମିଦାରୀ ସିରସ୍ତାର ଚିତ୍ର, ଯୌତୁକ ପ୍ରଥାର ସ୍ୱରୂପ ଏହି ନାଟକରେ ନିଖୁଣ ଭାବରେ ଚିତ୍ରିତ ହୋଇଛି । ନିଜେ କରଣ ସଂପ୍ରଦାୟଭୁକ୍ତ ହୋଇ ମଧ କରଣ ସଂପ୍ରଦାୟର ଅହମିକାକୁ ବ୍ୟଙ୍ଗ କରିଛନ୍ତି । ଚିତ୍ତ ବିନୋଦନ ମାଧମରେ ସମାଜସଂସ୍କାର ଆଣିବା ଭିକାରୀ ଚରଣଙ୍କ ମୁଖ୍ୟ ଉଦ୍ଦେଶ୍ୟ । 'ସଂସାରଚିତ୍ର' ନାଟକରେ ମୋଟ ଉପରେ ଯୌତୁକ ପ୍ରଥା, ବାହ୍ୟାଡମ୍ବର, ମହାଜନମାନଙ୍କ ସ୍ୱାର୍ଥ ଲିପ୍ସା, ଓକିଲମାନଙ୍କର ନୀତିହୀନ କାରବାର ତଥା ଗ୍ରାମଚାଟଶାଳୀମାନଙ୍କର ନାନା ପ୍ରକାର ତ୍ରୁଟିକୁ ଲେଖକ ବ୍ୟଙ୍ଗ କରିଛନ୍ତି ।

ଆଧୁନିକ ନାଟକ ରଚନା ଦୃଷ୍ଟିରୁ ଏଥିରେ କେତେକ ଦୋଷ ରହିଯାଇଛି । କିନ୍ତୁ ଏ ନାଟକକୁ ସେତେବେଳର ଦର୍ଶକ ଓ ସେତେବେଳର ରଙ୍ଗମଞ୍ଚ ସହିତ ତଉଲିବାକୁ ହେବ । ସେତେବେଳେ ଏହା ବେଶ୍ ଲୋକପ୍ରିୟ ହୋଇଥିଲା । ଏ ନାଟକଟି ଲୋକପ୍ରିୟତାର ଗୋଟିଏ ନମୁନା ହେଲା, ସଂସାରଚିତ୍ର ନାଟକ ପାଇଲାପରେ ଫକୀର ମୋହନ ନାଟ୍ୟକାରଙ୍କୁ ଏକ ଚିଠି ଲେଖିଥିଲେ 'ବହି ଖଣ୍ଡିକ ପାଇଲି ରୋଗଶଯ୍ୟାରେ ପଡ଼ି ଏକା ନିଶ୍ୱାସକେ ଶେଷ କଲି । ସମାଜକୁ ଦନ୍ତ ନଖରେ ବିଦାରି ପକାଇଛୁ ।' ତେଣୁ ଭିକାରୀ ଚରଣଙ୍କ ସୃଷ୍ଟି ପ୍ରତିଭାର ବିଚାର କାଳରେ ଫକୀରମୋହନଙ୍କର ଏହି ଉକ୍ତି ପ୍ରଣିଧାନ ଯୋଗ୍ୟ । କାରଣ ଏହା କେବଳ ଫକୀର ମୋହନଙ୍କର ବ୍ୟକ୍ତିଗତ ମତ ନୁହେଁ; ସେ କାଳର ସମାଜ-ସଚେତନ ସାଧକ-ଶିଳ୍ପୀମାନଙ୍କର ମାନସଲୋକର ପ୍ରତିନିଧିତ୍ୱ କରୁଛି । (ସାହିତ୍ୟ ଦୃଷ୍ଟି-ପୃ.୧୦୧)

୫-ସୁଶୀଳା-(୧୯୧୭) : ସୁଶୀଳା ନାଟକରେ ଅନ୍ୟ ଏକ ସାମାଜିକ ସମସ୍ୟାକୁ ଉତ୍‌ଥାପନ କରିବା ପାଇଁ ଭିକାରୀ ଚରଣ ପ୍ରୟାସ କରିଛନ୍ତି । ଏହି ନାଟକ ସଂପର୍କରେ ଅଭିମତ ଦେବାକୁ ଯାଇ ସାହିତ୍ୟିକ ଶଶିଭୂଷଣ ରାୟ ଲେଖିଛନ୍ତି ''ଏହାଭଳି ସାମାଜିକ ନାଟକ ଉତ୍କଳରେ ବିରଳ ।'' ଏହି ନାଟକରେ ନାରୀର ଦୁଇଟି ରୂପକୁ ଚିତ୍ରଣ କରାଯାଇଛି । ଫକୀରମୋହନଙ୍କ ଉପନ୍ୟାସର ଛାଞ୍ଚ ଅନେକ

ଜାଗାରେ ପ୍ରତିଫଳିତ ହୋଇଛି । ଏକ ପକ୍ଷରେ ଲଜ୍ଜାଶୀଳା ସୁଶୀଳା ସ୍ତ୍ରୀର ମହତ୍ତ୍ୱ ଓ ଅନ୍ୟପକ୍ଷରେ ରୁକ୍ଷଭାଷୀ ବିଳାସିନୀ ସ୍ତ୍ରୀର ଭିନ୍ନ ରୂପ ଦେଖାଇ ଦିଆଯାଇଛି । ହିନ୍ଦୁନାରୀ କିପରି ତାର କୁପଥଗାମୀ ସ୍ୱାମୀକୁ ସୁପଥକୁ ଫେରାଇ ଆଣିପାରେ ଏହାର ଚିତ୍ର ପ୍ରଦାନ କରିବା ଲେଖକଙ୍କର ଲକ୍ଷ୍ୟ । ଏ ଭଳି  ଚରିତ୍ର ହେଉଛି ଏସ୍. ଦାସ । ଓଡ଼ିଆମାନଙ୍କ ପ୍ରତି (ନେଟିଭ) ୟୁରୋପୀୟମାନଙ୍କର ମନୋଭାବ ନାଟକ ମାଧମରେ ଦେଖାଇ ଦିଆଯାଇଛି । ସେ ସମୟରେ କଟକରେ ୟୁରୋପୀୟମାନଙ୍କର ଏକ କ୍ଲବ ଥିଲା । ସେଥିରେ କଳା ଲୋକଙ୍କର ପ୍ରବେଶାଧିକାର ନଥିଲା । (ଡଃ ଭାବଗ୍ରାହୀ ମିଶ୍ରଙ୍କର ଭିକାରୀ ଚରଣଙ୍କ ସହିତ ଏକ ସାକ୍ଷାତକାରରୁ ଗୃହୀତ) ଏସ୍.ଦାସ ଓ ସେକ୍ରେଟାରୀଙ୍କ କଥୋପକଥନ ଏହାର ନମୁନା ।

ଏହି ନାଟକରେ ସମାନ ଧରଣର ସମାନ୍ତରାଳ ଚରିତ୍ର ନାଟ୍ୟ ସୃଷ୍ଟିରେ ଦ୍ୱନ୍ଦ୍ୱ ପ୍ରଦର୍ଶନ ପାଇଁ ପ୍ରୟୋଗ କରାଯାଇଛି । ନାଟ୍ୟକାରଙ୍କର ମୁଖ୍ୟ ଉଦ୍ଦେଶ୍ୟ ସମାଜସଂସ୍କାର, ନାଟ୍ୟ ରଚନା କେବଳ ମାଧମ । ଏଣୁ କେତେକ କ୍ଷେତ୍ରରେ ଅତିମାତ୍ରାରେ ଆଦର୍ଶବାଦୀ ହେବାଦ୍ୱାରା ନାଟକୀୟ ସଂହତି ବାଧାପ୍ରାପ୍ତ ହୋଇଛି । ଭାରତୀୟ ସାମାଜିକ ଜୀବନରେ ନାରୀ ହିଁ ସମସ୍ତ ପାରିବାରିକ ଜୀବନର ଯୋଗସୂତ୍ର, ମାତ୍ର ସେହି ସଂହତି ଯେତେବେଳେ ବିପର୍ଯ୍ୟସ୍ତ ହୁଏ ପରିବାର ଛିନ୍ନଭିନ୍ନ ହୋଇଯାଏ । ଏହି ସଂହତି ରକ୍ଷାପାଇଁ ଲେଖକ ଏହାର ବିବିଧ ରୂପ ପ୍ରତିପାଦନ କରିଛନ୍ତି । ଏହି ନାଟକରେ ସଦାଶିବ ଚରିତ୍ର ଏକ ଅଦଭୂତ ସୃଷ୍ଟି । ପାଗଳା ଭାବରେ ସେ ଗଭୀର ସାମାଜିକ ଦର୍ଶନର ବ୍ୟାଖ୍ୟା ପ୍ରଦାନ କରିଛି । ଲେଖକ ପରୋକ୍ଷ ଭାବରେ ସଦାଶିବ ଭୂମିକାରେ ଅବତୀର୍ଣ୍ଣ ହେବାପରି ମନେହୁଏ ।

୬-ଯୌତୁକ-(୧୯୨୪) : ଏହି ପ୍ରହସନଟି 'କଟକ ଭାରତୀ କ୍ଲବ' ଦ୍ୱାରା ପ୍ରଥମେ ଅଭିନୀତ ହୋଇଥିଲା । ଏହାର ପ୍ରକାଶକ ଲେଖକ ନିଜେ ଓ ଚନ୍ଦ୍ରୋଦୟ ପ୍ରେସରେ ଶ୍ରୀ ଏଚ୍.କେ. ଦାସଙ୍କ ଦ୍ୱାରା ମୁଦ୍ରିତ । ଏଥିରେ ମଧ ଯୌତୁକପ୍ରଥା ବିରୋଧରେ ବିକ୍ଷୋଦ୍‌ଗାର କରାଯାଇଛି । ଏହି ପ୍ରହସନର ଚିନ୍ତାଧାରା ପୂର୍ବରୁ 'ସଂସାରଚିତ୍ର' ନାଟକରେ ପ୍ରତିଫଳିତ । ସଂସାରଚିତ୍ରରେ ଯୌତୁକପ୍ରଥାକୁ ବ୍ୟଙ୍ଗକରି କହିଛନ୍ତି 'ବର ମାଟ୍ରିକ୍ୟୁଲେସନ ପାଶ୍ କରିଥିଲେ ଜମିବାଡ଼ି ବିକ୍ରି କରିବାକୁ ହୁଏ, ଆଇ.ଏ. ପାଶ୍ କରିଥିଲେ ଜମିବାଡ଼ି, ଘରଦ୍ୱାରା ବିକ୍ରି କରିବାକୁ ହୁଏ, ବର ବି.ଏ. ପାଶ୍ କରିଥିଲେ ଜମିବାଡ଼ି, ଘରଦ୍ୱାର, ସ୍ତ୍ରୀ ପରିବାର ସମସ୍ତ ବିକ୍ରି କରିବାକୁ ହୁଏ । ପାଶ୍ ସାର୍ଟିଫିକେଟ ଦେଖନ୍ତୁ ତହିଁରେ ଏକଥା ସ୍ପଷ୍ଟ ଲେଖା ଅଛି ।' [ସଂସାରଚିତ୍ର

(ଦ୍ୱିତୀୟ ମୁଦ୍ରଣ) ପୃ.୯] କରଣମାନଙ୍କର ବୃଥା ବଡ଼ିମା ଓ ଯୌତୁକପ୍ରଥା ବିରୋଧରେ ଏହା ଏକ ଶାଣିତ କଟାକ୍ଷ ।

୭-ରାଜା ପୁରୁଷୋତ୍ତମ-(୧୯୨୫) : ଏହି ନାଟକଟି 'ଉମାକାନ୍ତ ସମିତି' ଦ୍ୱାରା ପ୍ରଥମବାର ଅଭିନୀତ ହୋଇଛି ବୋଲି ନାଟକରେ ଉଲ୍ଲିଖିତ ହୋଇଛି । ଓଡ଼ିଆରେ ପୂର୍ବରୁ ରାଜା ପୁରୁଷୋତ୍ତମ ଦେବଙ୍କୁ ଭିତ୍ତିକରି ରାମଶଙ୍କର ରାୟଙ୍କର କାଞ୍ଚିକାବେରୀ, ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ପୁରୁଷୋତ୍ତମ ଦେବ ଓ ପରେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କର ଅଭିଯାନ ଲେଖା ହୋଇଥିଲେ ମଧ ଭିକାରୀ ଚରଣଙ୍କର ନାଟକର କଥାବସ୍ତୁ ଅନ୍ୟ ତିନୋଟି ଠାରୁ ଭିନ୍ନ । ଅନ୍ୟ ନାଟକରେ ପୁରୁଷୋତ୍ତମ ଦେବଙ୍କ କାଞ୍ଚିଅଭିଯାନ ଓ ପଦ୍ମାବତୀଙ୍କୁ ବିବାହ ମୁଖ୍ୟ କଥାବସ୍ତୁ । ଭିକାରୀ ଚରଣଙ୍କ ନାଟକର କଥାବସ୍ତୁ ହେଉଛି ପୁରୁଷୋତ୍ତମ ଦେବଙ୍କର ସିଂହାସନ ପ୍ରାପ୍ତି । କପିଳେନ୍ଦ୍ର ଦେବଙ୍କ ପରେ ସିଂହାସନ ଆରୋହଣ ପାଇଁ ଯେଉଁ କନ୍ଦଳର ସୂତ୍ରପାତ ହୋଇଥିଲା ସେଇକଥାକୁ ଏଇ ନାଟକରେ ଉପସ୍ଥାପନ କରାଯାଇଛି । ନାଟକଟିର ସମାପ୍ତି ଘଟିଛି ପୁରୁଷୋତ୍ତମ ଦେବଙ୍କ ସିଂହାସନ ପ୍ରାପ୍ତି ପରେ । କପିଳେନ୍ଦ୍ରଦେବଙ୍କ ରାଜତ୍ୱ ଓ ତାଙ୍କ ମୃତ୍ୟୁରେ ଭାତୃବିବାଦ ହିଁ ଏ ନାଟକରେ ଦେଖାଇ ଦିଆଯାଇଛି ।

ସମାଜସଂସ୍କାରକ ଭିକାରୀ ଚରଣ ଓଡ଼ିଶାର ଅତୀତ ଗୌରବକୁ ନେଇ କେବଳ ସନ୍ତୁଷ୍ଟ ନୁହନ୍ତି । ବର୍ତ୍ତମାନ ହିଁ ତାଙ୍କ ପାଇଁ ବିଶେଷ ଆବଶ୍ୟକ । ଅଧଃପତିତ ଓଡ଼ିଆ ଜାତିକୁ ଉଠାଇବାକୁ ହେଲେ ବର୍ତ୍ତମାନ କିଛି କାମକରି ଜାତିକୁ ଉଠାଇବାକୁ ହେବ । ସେହି ଲକ୍ଷ୍ୟନେଇ ଭିକାରୀ ଚରଣ ଐତିହାସିକ ବିଷୟବସ୍ତୁ ଉପରେ ନାଟକ ରଚନା କରିଛନ୍ତି । ''ଇତିହାସକୁ ଅନୁସରଣ ନ କରିଥିବା ଅଭିଯୋଗରେ ଭିକାରୀ ଚରଣଙ୍କୁ ଅନେକ ସ୍ଥଳରେ ଦୋଷୀ ସାବ୍ୟସ୍ତ କରାଯାଇଛି, କିନ୍ତୁ ଭିକାରୀ ଚରଣଙ୍କ ନାଟକ ରଚନା କାଳରେ ଓଡ଼ିଶାରେ ବିଧିବଦ୍ଧ ଇତିହାସ ରଚିତ ହୋଇନାହିଁ । ମାଦଳାପାଞ୍ଜି ଓ ଜନଶ୍ରୁତିରେ ଜୀବିତ ଇତିହାସ ଭିକାରୀ ବାବୁଙ୍କର ଏକମାତ୍ର ଅବଲମ୍ବନ ଥିଲା ।' (ସାହିତ୍ୟ ଦୃଷ୍ଟି ପୃ.୧୦୯) ଭିକାରୀ ଚରଣ ଐତିହାସିକ ନୁହନ୍ତି, ସେ ନାଟ୍ୟକାର ଇତିହାସର ଚରିତ୍ରମାନେ ତାଙ୍କ ଭାବନା ଉପସ୍ଥାପନର ମାଧ୍ୟମ ମାତ୍ର । ସଂସ୍କାରକାମୀ ଭିକାରୀ ଚରଣ ଐତିହାସିକ ନାଟକରେ ମଧ କରଧାର୍ଯ୍ୟ ସଂପର୍କୀୟ ପ୍ରତିବାଦର ସ୍ୱର ଉଠାଇଛନ୍ତି । ନାଟକରେ ଚୌକିଦାରୀ ଟିକସ ମାଫ ଓ ଲବଣ ଶୁଳ୍କ ହ୍ରାସ ବିଷୟରେ ଆଲୋକପାତ କରାଯାଇଛି । ମହାତ୍ମାଗାନ୍ଧୀଙ୍କର

ଲବଣ ସତ୍ୟାଗ୍ରହ ପୂର୍ବରୁ ତାଙ୍କ ନେତୃତ୍ୱରେ ୧୯୨୫ ବେଳକୁ ଏ ପ୍ରକାର ଅସନ୍ତୋଷର ସ୍ୱର ଭାରତରେ ଶୁଣାଯାଇଥିଲା । ନାଟ୍ୟକାର ଏହାକୁ ନାଟକରେ ଉଲ୍ଲେଖ କରିଥିଲେ ହେଁ, କପିଳେନ୍ଦ୍ର ଦେବଙ୍କ ଲବଣ ଶୁଳ୍କ ହ୍ରାସ ପ୍ରସଙ୍ଗଟି ଇତିହାସ ସମର୍ଥିତ ବିଷୟ ।

୮-ପଦ୍ମଲୋଚନ-(୧୯୪୦) : ଏହି ନାଟକଟି ଅଦ୍ୟାବଧି ଅପ୍ରକାଶିତ ରହିଛି ମାତ୍ର ଏହା ସଂପର୍କରେ ଡକ୍ଟର ହେମନ୍ତ କୁମାର ଦାସ ତାଙ୍କର 'ଓଡ଼ିଆ ନାଟକ : ଉଦ୍‌ଭବ ଓ ବିକାଶରେ' ଲେଖିଛନ୍ତି ''୧୯୪୦ ମସିହାରେ ଯୁଦ୍ଧପାଣ୍ଠିକୁ ସାହାଯ୍ୟ ଦେବା ନିମନ୍ତେ ଏକ ସାହାଯ୍ୟ ରଜନୀର ବ୍ୟବସ୍ଥା କରାଯାଇ ସେଥିରେ ଭିକାରୀ ବାବୁଙ୍କର ପଦ୍ମଲୋଚନ ନାମକ ଖଣ୍ଡିଏ ନାଟକ ଅଭିନୀତ ହୋଇଥିବାର ଜଣାଯାଏ । ଏହା 'ସାହିତ୍ୟ ସମାଜ' ରଙ୍ଗମଞ୍ଚରେ ପି. ଡବ୍‌ଲିଉ.ଡି. କ୍ଲବ ତରଫରୁ ମଞ୍ଚସ୍ଥ ହୋଇଥିଲା ଏବଂ ଏହାକୁ ଉଦ୍‌ଘାଟନ କରିଥିଲେ ଓଡ଼ିଶାର ତତ୍କାଳୀନ ଗଭର୍ଣ୍ଣର ।

ନାଟକର ବିଷୟବସ୍ତୁ ଏକ କୃପଣ ବ୍ୟକ୍ତିକୁ ନେଇ କଳ୍ପିତ ହୋଇଥିଲା । ଯୁଦ୍ଧ ବଣ୍ଡରେ ଟଙ୍କା ନ ଖଟାଇ ସମସ୍ତ ଟଙ୍କା ଘରେ ରଖିଥିବା ଅବସ୍ଥାରେ ଡକାୟତମାନେ ତାହା ଅପହରଣ କରିଥିଲେ ଏବଂ କୃପଣ ଟଙ୍କା ଶୋକରେ ପ୍ରାଣତ୍ୟାଗ କରିଥିଲା । ହାସ୍ୟରସ ପରିପୂର୍ଣ୍ଣ ଏହି ନାଟକର ବିଷୟବସ୍ତୁ ଏତିକି ମାତ୍ର ।'' (ପୃ.୩୮୯)

ଏହି ନାଟକ ସଂପର୍କରେ ଡଃ ଦାସ ମନ୍ତବ୍ୟ ପ୍ରଦାନ କରିଛନ୍ତି ଯେ 'ଆନୁଗତ୍ୟର ଫଳ ସ୍ୱରୂପ ନାଟକାଭିନୟର ଅଳ୍ପଦିନ ପରେ ଭିକାରୀ ଚରଣ 'ରାୟବାହାଦୁର' ଏବଂ ପି.ଡବ୍ଲ୍ୟୁ.ଡି. କ୍ଲବର ସଂପାଦକ ଶଶିଭୂଷଣ ଦତ୍ତ 'ରାୟ ସାହେବ' ଉପାଧିରେ ଭୂଷିତ ହୋଇଥିଲେ । (ପୃ.୩୫୯) ଏଠାରେ ପ୍ରଶ୍ନ ଉଠୁଛି ଭିକାରୀ ଚରଣ ୧୯୩୭ରେ ରାୟ ବାହାଦୁର ଉପାଧି ପାଇଥିଲେ । ଖ୍ରୀ: ୧୯୪୦ରେ ଅଭିନୀତ ନାଟକ ସହିତ ଏହାର ସଂପର୍କ କିପରି ରହିଲା ଏହା ଅନୁସନ୍ଧାନର ବିଷୟ ।

୯-ନିରୁପମା-୧୯୫୨ : ଏହି ନାଟକଟି ସମାଜ ସଂପାଦକ ରାଧାନାଥ ରଥଙ୍କ ଦ୍ୱାରା ପ୍ରକାଶିତ । ଭିକାରୀ ଚରଣ ତାଙ୍କର ସମସ୍ତ ପୁସ୍ତକକୁ ନିଜ ବ୍ୟୟରେ ହିଁ ପ୍ରକାଶ କରାଇଥିଲେ । ସେ ଦୃଷ୍ଟିରୁ ଏହା ଏକ ବ୍ୟତିକ୍ରମ । ଏ ନାଟକଟି ସମାଜିକ ସମସ୍ୟା ଉପରେ ଆଧାରିତ ଏକ ପ୍ରଚାରଧର୍ମୀ ସାହିତ୍ୟ । ଏ ନାଟକ ରଚନା ପୂର୍ବରୁ ନାଟ୍ୟକାର କୁଷ୍ଠରୋଗ ବିଶେଷଜ୍ଞ ତଥା କୁଷ୍ଠ ନିରାକରଣ କ୍ଷେତ୍ରରେ ଆଜୀବନ ସାଧନା କରିଥିବା ଡାକ୍ତର ଆଇଜାକ୍ ସାନ୍ତାଙ୍କର ପରାମର୍ଶ ନେଇଥିଲେ । ଏଣୁ ଏ ନାଟକର ପ୍ରତିପାଦିତ ତତ୍ତ୍ୱ ବୈଜ୍ଞାନିକ ସିଦ୍ଧ ବୋଲି ଧରିନେବାକୁ ହେବ । ଅଜ୍ଞତା ଓ ଲୋଭରୁ ଯୌତୁକ ରୂପକ ବ୍ୟାଧି ସମାଜକୁ ଗ୍ରାସ କଲାପରି, ଅଜ୍ଞତା ଓ ଅନ୍ଧ

ବିଶ୍ୱାସ କାରଣରୁ କୁଷ୍ଠରୋଗ ବଡରୋଗ ଭାବରେ ବ୍ୟାପୀ ଚାଲିଛି । ସମାଜସଂସ୍କାରକ ଭିକାରୀ ଚରଣ ଜୀବନର ଉତ୍ତରାର୍ଦ୍ଧରେ ଏ ନାଟକ ରଚନା କରିଥିଲେ । ଲୋକଙ୍କ ମନରୁ କୁଷ୍ଠରୋଗ ସଂପର୍କରେ ଧାରଣା ପରିବର୍ତ୍ତନ କରିବା ଓ କୁଟୀରଶିଳ୍ପ ମାଧ୍ୟମରେ ରୋଗମୁକ୍ତ ଲୋକ ଓ ଚିକିତ୍ସାଧୀନ ଲୋକମାନଙ୍କୁ ଆତ୍ମନିର୍ଭରଶୀଳ କରିବା ଥିଲା ଭିକାରୀ ଚରଣଙ୍କ ମୁଖ୍ୟ ଲକ୍ଷ୍ୟ । ଜଣେ ଉଚ୍ଚ ଶିକ୍ଷିତ ନବ ବିବାହିତ ଯୁବକ ଚନ୍ଦ୍ରଶେଖର ତାଙ୍କର ସ୍ତ୍ରୀ ନିରୁପମା କୁଷ୍ଠରୋଗାକ୍ରାନ୍ତ ବୋଲି ଜାଣିପାରିଛନ୍ତି । ପରିବାରର ଲୋକେ ରୋଗ ସଂପର୍କରେ ଜାଣିବା ପରେ ଯୁବକକୁ ଅନ୍ୟତ୍ର ବିବାହ ଦେବାପାଇଁ ଚେଷ୍ଟା କରୁଛନ୍ତି, ମାତ୍ର ଯୁବକ ଏଥିରେ ସମ୍ମତି ପ୍ରଦାନ ନ କରି ସ୍ତ୍ରୀର ଚିକିତ୍ସା କରିଛନ୍ତି । ସେବା ଓ ଚିକିତ୍ସା ମାଧ୍ୟମରେ ନିରୁପମା ରୋଗମୁକ୍ତ ହେଲାପରେ ସେମାନେ ଗୋଟିଏ କୁଷ୍ଠାଶ୍ରମ ସ୍ଥାପନ କରି ଏହି ରୋଗାକ୍ରାନ୍ତ ବ୍ୟକ୍ତିମାନଙ୍କୁ ଚିକିତ୍ସା ମାଧ୍ୟମରେ କେବଳ ରୋଗମୁକ୍ତ କରାଇ ନାହାନ୍ତି, ସେମାନଙ୍କୁ ଆତ୍ମ ନିଯୁକ୍ତି ପ୍ରଦାନ ସଙ୍ଗେ ସଙ୍ଗେ ଲୋକମାନଙ୍କ ମନରେ ରୋଗ ସଂପର୍କରେ ଯେଉଁ ଭୟଥାଏ ତାକୁ ଦୂର କରିବାକୁ ଚେଷ୍ଟା କରିଛନ୍ତି । ଏହି ପୁସ୍ତକର ମୁଖବନ୍ଧରେ ଲେଖକଙ୍କ ମନ୍ତବ୍ୟ ବିଶେଷ ପ୍ରଣିଧାନ ଯୋଗ୍ୟ :

'ସମାଜ'ର ସଂପାଦକ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ଆନୁକୂଲ୍ୟରେ ଏ ପୁସ୍ତକଟି ଛପାଇବାର ସମସ୍ତ ବ୍ୟୟ 'ସମାଜ' ଅନୁଷ୍ଠାନ ବହନ କରିଥିବାରୁ କୁଷ୍ଠ ନିବାରଣ ସଂଘ 'ସମାଜ' କର୍ତ୍ତୃପକ୍ଷଙ୍କୁ ଅନ୍ତରର ସହିତ ଧନ୍ୟବାଦ ଜଣାଉଛି । ପୁସ୍ତକର ବିକ୍ରୟ ଲବ୍ଧ ଧନ ସମସ୍ତ କୁଷ୍ଠ ନିବାରଣ ସଂଘ କୁଷ୍ଠ ସେବା ନିମନ୍ତେ ବ୍ୟୟ କରିବ । ପୁସ୍ତକ ଖଣ୍ଡି ଲେଖିଲାବେଳେ କୁଷ୍ଠରୋଗ ସମ୍ବନ୍ଧୀୟ ଉଲ୍ଲେଖଯୋଗ୍ୟ ବିଷୟ ଜାଣିବା ପାଇଁ ସଂଘର ସଂପାଦକ ଡାକ୍ତର ଶ୍ରୀ ନାରାୟଣ ବନ୍ଧୁ ପଟ୍ଟନାୟକ ଓ ସଂଘର ଜଣେ ବିଶିଷ୍ଟ ସଭ୍ୟ ଡାକ୍ତର ଆଇଜାକ ସାଆନ୍ତ୍ରା ମୋତେ ଯଥେଷ୍ଟ ସାହାଯ୍ୟ କରିଥିବାରୁ ମୁଁ ସେମାନଙ୍କ ଠାରେ ବିଶେଷ କୃତଜ୍ଞ । ନାଟକଟି ପ୍ରଥମେ ଅଭିନୟ କରି ଦେଖାଇବାରେ ଶ୍ରୀ ଅରୁଣ ଚନ୍ଦ୍ର ମୁଖାର୍ଜି, ଶ୍ରୀ ବିନୋଦ ଚନ୍ଦ୍ର ପଟ୍ଟନାୟକ ଓ ମୋହର ପୁତ୍ର ଶ୍ରୀ ରଘୁନାଥ ପଟ୍ଟନାୟକ ଯଥେଷ୍ଟ ଯତ୍ନ ଓ ପରିଶ୍ରମ କରିଥିବାରୁ ସେମାନଙ୍କୁ ଏହିରୂପ ସର୍ବସାଧାରଣ ଜନମାଙ୍ଗଳ କାର୍ଯ୍ୟରେ ଉତ୍ସାହିତ କରିବା ପାଇଁ ସେମାନଙ୍କର ନାମ ଏଠାରେ ଉଲ୍ଲେଖ କଲି । ପୁସ୍ତକ ଖଣ୍ଡି ଯେବେ ସର୍ବସାଧାରଣରେ ଆଦୃତ ହୁଏ ଏବଂ କୁଷ୍ଠରୋଗ ସମ୍ବନ୍ଧେ କେତେଗୁଡ଼ିଏ ନିତାନ୍ତ ଜ୍ଞାତବ୍ୟ ବିଷୟ ସର୍ବସାଧାରଣଙ୍କ ଜାଣିବା ପାଇଁ ସାହାଯ୍ୟ କରିପାରେ, ତେବେ ମୋହର ଲେଖିବାର କର୍ମ ସାର୍ଥକ ମଣିବି ।

ଟାଉନହଲ ରୋଡ, କଟକ ୦୬.୦୨.୧୯୫୨  ଶ୍ରୀ ଭିକାରୀ ଚରଣ ପଟ୍ଟନାୟକ

୧୦-କର୍ମକ୍ଷେତ୍ର ନାଟକ-(୧୯୬୦) : ଏହି ନାଟକଟି ଲେଖକଙ୍କର ସର୍ବଶ୍ରେଷ୍ଠ ନାଟକ । ଏହା ବି ଲେଖକଙ୍କ ଦ୍ୱାରା ପ୍ରକାଶିତ ଓ କଟକର ପଟ୍ଟନାୟକ ପ୍ରେସରେ ମୁଦ୍ରିତ । ପରହାତକୁ ଅନାଇ ରହିଥିବା ତଥା କର୍ମପ୍ରତି ବିମୁଖ ବ୍ୟାଧିରେ ଆକ୍ରାନ୍ତ ବ୍ୟକ୍ତିମାନଙ୍କ ପ୍ରତି ଏଥିରେ ବିଦ୍ରୂପ କରାଯାଇଅଛି । ଭାରତୀୟ ସଂସ୍କୃତି ପ୍ରତି ବିମୁଖ ଆଧୁନିକ ଶିକ୍ଷାରେ ଯେଉଁ ଅନ୍ତଃସାରଶୂନ୍ୟ ଭାବ ଦେଖାଯାଇଛି, ଲେଖକ ତାକୁ ବିଦ୍ରୂପ କରିଛନ୍ତି । କୁଟୀରଶିଳ୍ପ ଦାରିଦ୍ର୍ୟର ସଂକେତ ନୁହେଁ କିମ୍ବା କୁଟୀରଶିଳ୍ପ ପ୍ରଗତିର ପଥରୋଧକାରୀ ନୁହେଁ, କୁଟୀରଶିଳ୍ପ ଶିକ୍ଷିତ ଲୋକଙ୍କ ପାଇଁ ପ୍ରତିବନ୍ଧକ ନୁହେଁ । ଏଇସବୁ ଭାବନାକୁ ପ୍ରତିପାଦନ କରିବାପାଇଁ ଚେଷ୍ଟା କରାଯାଇଛି ।

ଜୀବନରେ କୁଟୀରଶିଳ୍ପକୁ ବ୍ରତ ଭାବରେ ଓ ଜୀବନର ଲକ୍ଷ୍ୟ ଭାବରେ ଗ୍ରହଣ କରିନେଇଥିବା ଭିକାରୀ ଚରଣ ଏ ନାଟକରେ ଯଥାସାଧ୍ୟ କୁଟୀରଶିଳ୍ପର ବିକାଶ ସଂପର୍କରେ ଅଭିମତ ପ୍ରଦାନ କରିଛନ୍ତି । ସେଥିପାଇଁ ଅନେକତ୍ର ନାଟକରେ ନାଟକୀୟତା ବ୍ୟାହତ ହୋଇଛି । କିନ୍ତୁ ସଂସ୍କାରକାମୀ ଭିକାରୀ ଚରଣ ଅଶିବର୍ଷ ବୟସରେ ବି ଏ ଯେଉଁ କର୍ମକ୍ଷେତ୍ର ନାଟକ ରଚନା କରିଛନ୍ତି ତାକୁ ଫଳବତୀ କରିବା ପାଇଁ ଅଦମ୍ୟ ଚେଷ୍ଟା ଚଳାଇଛନ୍ତି । ନାଟକର ସଫଳ ମଞ୍ଚସ୍ଥ ପାଇଁ ଏ ନାଟକର ଶେଷ ପୃଷ୍ଠାରେ ନିର୍ଦ୍ଦେଶନାମା ପ୍ରଦାନ କରିଛନ୍ତି । ଚରିତ୍ରମାନଙ୍କର ଯାତ୍ରା ସଂପର୍କୀୟ ପୋଷାକପତ୍ର ସମେତ ହସ୍ତଶିଳ୍ପର ପ୍ରଦର୍ଶନ ପାଇଁ ୧୭ ପ୍ରକାର ଆବଶ୍ୟକୀୟ ପଦାର୍ଥର ତାଲିକା ଯୋଗ କରି ଅଛନ୍ତି । ସେ ମଧ୍ୟରୁ କୋଡୋଟିର ନାମ ଏପରି ; ଯଥା :-୩- କେତେଗୁଡ଼ିଏ କୃଷି ଯନ୍ତ୍ର- ଲଙ୍ଗଳ, କୋଦାଳ, ମହି ଇତ୍ୟାଦି ; ୫-ସାବୁନ ତିଆରି ନିମନ୍ତେ କଡ଼ା, ଚଟୁ, ତେଲ, କଷ୍ଟିକ ସୋଡା ଜଳ ଇତ୍ୟାଦି ; ୧୨-ଝୋଟ, ବାଣି ଟାକୁଆ ଢେରା, ବାଣି ; ୧୭-ମେଣ୍ଢାଲୋମ ଇତ୍ୟାଦି ।

ଏତଦ୍‌ବ୍ୟତୀତ ଭିକାରୀ ଚରଣ ୧୯୦୪ ମସିହାରେ 'ଲଙ୍କାଦହନ' ନାମରେ ଗୋଟିଏ ନାଟକ ରଚନା କରିଥିବା କଥା ଅଧ୍ୟାପକ ପ୍ରିୟ ରଞ୍ଜନ ସେନ ତାଙ୍କର ମଡର୍ଣ୍ଣ ଓଡ଼ିଆ ଲିଟେରେଚର ପୁସ୍ତକରେ ଉଲ୍ଲେଖ କରିଛନ୍ତି । (କିନ୍ତୁ ଏ ତଥ୍ୟଟି ଭୁଲ । 'ଲଙ୍କା ଦହନ'ର ନାଟ୍ୟକାର ଭିକାରୀ ଚରଣ ପଟ୍ଟନାୟକ ଥିଲେ ଜଣେ ଗ୍ରାମୀଣ କବି ଓ ତାଙ୍କର ନାଟକ ଯାତ୍ରା ନିଟକରେ ଶୈଳୀରେ ରଚିତ ହୋଇଥିଲା ।) ପୁଣି ସେ ୧୯୦୯ ମସିହାରେ 'ଅଦଭୁତ ଆଦର୍ଶ' ନାମରେ ଗୋଟିଏ ପ୍ରହସନ ଲେଖିଥିଲେ । ମ୍ୟୁନିସ୍‌ପାଲିଟି ନିର୍ବାଚନପଦ୍ଧତି ଓ ଭୋଟପ୍ରଥାର ପ୍ରହସନକୁ ସେଥିରେ ସମାଲୋଚନା କରାଯାଇଛି । ଏ ପ୍ରହସନଟି କେବେ ପ୍ରକାଶିତ ହୋଇଛି ଠିକ୍ ଭାବରେ ଜଣା ପଡୁନି । କାରଣ ୧୯୧୫ରେ ପ୍ରକାଶିତ କଟକ ବିଜୟର ଦ୍ୱିତୀୟ

ସଂସ୍କରଣରେ ଦିଆଯାଇଥିବା ବହି ତାଲିକାରେ ଅଦ୍‌ଭୁତ ଆଦର୍ଶ ସଂପର୍କରେ କିଛି ଲେଖାଯାଇନାହିଁ । କିନ୍ତୁ ଯୌତୁକ ପ୍ରହସନର ୧୯୨୪ ମସିହା ସଂସ୍କରଣର ଶେଷ ପୃଷ୍ଠା ବିଜ୍ଞାପନରେ ଅଦ୍‌ଭୁତ ଆଦର୍ଶ ପ୍ରହସନ ପୁସ୍ତକର ମୂଲ୍ୟ ଦୁଇଅଣା ରଖାଯାଇଛି ।

ଭିକାରୀ ଚରଣଙ୍କ ନାଟକଗୁଡ଼ିକୁ ସାମଗ୍ରିକ ଭାବରେ ବିଚାର କଲେ ଜଣାଯାଏ ଯେ, ଭିକାରୀ ଚରଣ ଜଣେ ସମାଜସଂସ୍କାରକ । ସମାଜର ବିଭିନ୍ନ ସମସ୍ୟାକୁ ସେ ନାଟକ ବା କବିତା ମାଧ୍ୟମରେ ଉତ୍‌ଥାପନ କରିବା ପାଇଁ ପ୍ରୟାସ କରିଛନ୍ତି । ଆବଶ୍ୟକ ସ୍ଥଳେ ପ୍ରତ୍ୟେକର ସମାଧାନର ବାଟ ଦେଖାଇବା ପାଇଁ ନାଟକ ରଚନା କରି ମଞ୍ଚ ମାଧ୍ୟମରେ ପ୍ରଚାର ପାଇଁ ଚେଷ୍ଟା କରିଛନ୍ତି । ସେ ସମୟର ମଞ୍ଚକୌଶଳକୁ ସମ୍ମୁଖରେ ରଖିଥିବାରୁ ବର୍ତ୍ତମାନ ଦୃଷ୍ଟିରେ ଅନେକ କଥା ଅପ୍ରାସଙ୍ଗିକ ଲାଗୁଛି । ମୁଖ୍ୟ ଚରିତ୍ରମାନଙ୍କ ସହିତ ବହୁ ସଂଖ୍ୟାରେ ପାର୍ଶ୍ଵ ଚରିତ୍ର ବର୍ତ୍ତମାନ କ୍ଷେତ୍ରରେ ସମ୍ଭବ ନୁହେଁ, ସେତେବେଳେ ବୋଧହୁଏ ଅସୁବିଧା ହେଉ ନଥିଲା ; ନଚେତ ନାଟ୍ୟକାର ପରେ ପରେ ପରିବର୍ତ୍ତନ ପାଇଁ ଚେଷ୍ଟା କରିଥାନ୍ତେ ।

ଭିକାରୀ ଚରଣ ନିଜେ ଜଣେ ଗୀତିକାର ହୋଇଥିବାରୁ, ସେ ସମୟର ସୀମିତ ଆଲୋକ ଯୋଗାଣ ମଧ୍ୟରେ ସଂଗୀତ ପରିବେଷଣ ମନୋରଞ୍ଜନ ପାଇଁ ଖୋରାକ ଯୋଗାଉଥିବାରୁ ତଥା ସେ ସମୟରେ ପ୍ରଚଳିତ ଯାତ୍ରା ଅଥବା ଗୀତିନାଟ୍ୟ ସଂଗୀତବହୁଳ ଥିବାରୁ ସେ ତାଙ୍କ ନାଟକରେ ବହୁଳ ଗୀତର ପ୍ରୟୋଗ କରିଛନ୍ତି । ତାଙ୍କ ମନ ଭିତରେ ଗୋଟିଏ ନାଟୁଆ ସଂସ୍କାରକ ମନୋଭାବ ଥିବାରୁ ଯେଉଁଠି ନାଟକୀୟ ସଂହତି ରହି ପାରିଛି ସେଠରେ ସେ ବହୁଳ ପରିମାଣରେ ସ୍ଵଗତୋକ୍ତିର ପ୍ରୟୋଗ କରିଛନ୍ତି ।

ବର୍ତ୍ତମାନ ଦୃଷ୍ଟିରୁ ଭିକାରି ଚରଣଙ୍କ ନାଟକର ମଞ୍ଚୋପଯୋଗିତା ବିଶେଷ ନାହିଁ । ମାତ୍ର ତାଙ୍କ ନାଟକକୁ ସାହିତ୍ୟିକ ନାଟକ (Closet Play) ଭାବରେ ବିଚାର କଲେ ଆଜି ବି ତାହାର ସାହିତ୍ୟିକ ଓ ସାମାଜିକ ମୂଲ୍ୟ କ୍ଷୁଣ୍ଣ ହୋଇ ନାହିଁ । ତାଙ୍କ ନାଟକଗୁଡ଼ିକ ସମସାମୟିକ ଜନମାନସର ଚିତ୍ର ହୋଇଥିବାରୁ ଦେଶର ସାମାଜିକ ଜୀବନର ଇତିହାସ ରଚନା ପାଇଁ ଏହାର ଉପଯୋଗିତା ଯଥେଷ୍ଟ ରହିଛି ।

## କବି ଭିକାରୀ ଚରଣ :

କବି ଭିକାରୀ ଚରଣଙ୍କ କବିତାର ଅନ୍ତଃସ୍ଵର ହେଉଛି ବ୍ୟଙ୍ଗ, ବିଦ୍ରୂପ । ସାମାଜିକ ଅସମତା, ଯୌତୁକ ଦାବି ତଥା ଓଡ଼ିଆ ଜାତିର ବୃଥାଭିମାନ ଉପରେ

ସେ ଶାଣିତ ବ୍ୟଙ୍ଗ କବିତା ରଚନା କରିଛନ୍ତି । ଆଧୁନିକ ଓଡ଼ିଆ ସାହିତ୍ୟରେ ଫକୀରମୋହନଙ୍କ ପରେ ଭିକାରୀ ଚରଣ ହିଁ ବ୍ୟଙ୍ଗ ବିଦ୍ରୂପ ମାଧ୍ୟମରେ ନାଟକରେ ହେଉ ବା ଛୋଟ ଛୋଟ କବିତା ବହି ଲେଖି ହେଉ ଜାତିର ଶଲ୍ୟ ଚିକିତ୍ସା କରିବା ପାଇଁ ଅଗ୍ରସର ହୋଇପଡ଼ିଛନ୍ତି । କେତେବେଳେ ଖଣ୍ଡ କାବ୍ୟରେ ନିଜର ମନର ଭାବ ବ୍ୟକ୍ତ କରିଛନ୍ତି ତ କେତେବେଳେ ଗୀତିକା ଭାବରେ । ସେତେବେଳେ ଉତ୍କଳ ସାହିତ୍ୟରେ ଭିକାରୀ ଚରଣଙ୍କ ଅନେକ କବିତା ପ୍ରକାଶିତ ହୋଇ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ।

୧୯୨୧ ମସିହାରେ ତାଙ୍କର 'ଗୀତ ଲହରୀ' ପ୍ରକାଶିତ ହେବା ଆଗରୁ ସାମାଜିକ ବିଦ୍ରୂପ ଭରା ବ୍ୟଙ୍ଗ କବିତା ଛୋଟ ଛୋଟ ବହି ଆକାରରେ ପ୍ରକାଶିତ ହୋଇ ଆଦର ଲାଭ କରିଥିଲା । ଅବଶ୍ୟ ଏହି ସମୟ ଭିତରେ ସେ ଜଣେ ନାଟ୍ୟକାର ଭାବରେ ପ୍ରସିଦ୍ଧି ଅର୍ଜନ କରିସାରିଥିଲେ । 'ଗୀତ ଲହରୀ' ତାଙ୍କ ନିଜ ଦ୍ୱରା ପ୍ରକାଶିତ ଓ ଉତ୍କଳ ସାହିତ୍ୟ ପ୍ରେସରେ ବିଶ୍ୱନାଥ କରଙ୍କ ଦ୍ୱାରା ମୁଦ୍ରିତ ହୋଇଥିଲା । 'ଗୀତ ଲହରୀ' ଗୋଟିଏ ଗୀତି-କବିତା ସଂକଳନ । ରାଗ-ତାଳ ନିର୍ଦ୍ଦେଶ ଥିବା ୧୦୨ଟି ଗୀତ ଏଥିରେ ସଙ୍କଳିତ ହୋଇ ଯଥେଷ୍ଟ ଆଦର ଲାଭ କରିଥିଲା । କବି ଗୀତଗୁଡ଼ିକର ବିଷୟବସ୍ତୁ କ୍ରମରେ ସଜାଇ ଦେଇଛନ୍ତି । ଏଥିରେ ସ୍ଥାନ ପାଇଛି ଜାତୀୟ ସଙ୍ଗୀତ ୪୪ଟି, ଧର୍ମ ସଙ୍ଗୀତ ୩୩ଟି, ପ୍ରେମ ସଙ୍ଗୀତ ୬ଟି ଓ କୌତୁକ ସଙ୍ଗୀତ ୧୯ଟି ।

କବି ଭିକାରୀ ଚରଣ ଓଡ଼ିଶାର ଅତୀତ ଗୌରବ ପାଇଁ ଗର୍ବିତ; ମାତ୍ର ସମସାମୟିକ ସମାଜର ଅବନତି ପାଇଁ ଅତ୍ୟନ୍ତ ମର୍ମାହତ  ଏକଥା ପୂର୍ବରୁ ଆଲୋଚନା କରାଯାଇଅଛି । ପ୍ରାଚୀନ ଉତ୍କଳର ଗର୍ବ ଗୌରବକୁ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଜାତିର ପତନ ପାଇଁ ବାରମ୍ବାର କ୍ଷୋଭ ପ୍ରକାଶ କରିଛନ୍ତି ।

ସେହି ଜାତି ଆଜି ପରମୁଖାପେକ୍ଷୀ
ଆଖିବୁଜି ନିଜେ ଅନ୍ଧ,
ସେ ଜାତି ଖୋଜଇ ପର ଅନୁଗ୍ରହ
ଶୁଣିବାକୁ ଏହା ମନ୍ଦ । (ଚତୁର୍ଥ ଗୀତ ପୃ.୬)

'ଗୀତ ଲହରୀ' ପ୍ରଥମ ୨୭ଟି ଗୀତରେ ଉତ୍କଳୀୟ ଜାତୀୟତାର ସ୍ୱର ଭରି ରହିଛି, ୨୮ ନମ୍ବର ଗୀତରେ 'ଗୋ ସେବା' ସଂପର୍କରେ ଉଲ୍ଲେଖ ଥିଲାବେଳେ

୨୯ ନମ୍ବର ଗୀତରେ ବିଶ୍ୱଜନୀନ ଭାବ, ମାନବ ପ୍ରେମ ସଂପର୍କରେ ଭାବ ପ୍ରକଟିତ ହେବା ସଙ୍ଗେ ସଙ୍ଗେ ୩୬ ଓ ୩୮ ନମ୍ବର କବିତାରେ ଉତ୍କଳ ଜନନୀର ହତାଶାବୋଧ ଦେଖାଦେଇଛି । ସବୁ ଉଦ୍ୟମ ଯେପରି ଓଲଟା ହୋଇଯାଇଛି, ସେଥିପାଇଁ ଉତ୍କଳ ଜନନୀ ଗଭୀର ଦୁଃଖରେ କହୁଛନ୍ତି-

ମୋ କର୍ମେ ବାମ କି ବିହି ।
କେବେ ନ ଥିଲା ଯାହା ଏବେ ଘଟିଲା ତାହା,
ମୋ ସୁତେ ଭାଙ୍ଗି ବାହା ଲୋଡ଼ିଲେ ପରସାହା
କାଳ ହୋଇଲା କି ଅକାଳ
ସିଂହୀ ଉଦରୁ ଜାତ ଶୃଗାଳ
ରୋପିଲି ଚ୍ୟୁତ ଫଳ ଉଠି ହେଲା ଜଂବାଳ
ସବୁ ଆଶା ବିଫଳ ଦେଖି ପ୍ରାଣ ବିକଳ (ପୃ.୩୫-୩୬)

ଏପରି କବିତା ଗୁଡ଼ିକରେ କବିସୂର୍ଯ୍ୟ ବଳଦେବଙ୍କ 'ମୋ ଭାଲେ ଥିଲା କି ଲିହି'ର ପ୍ରଭାବ ପଡ଼ିଥିଲା ପରି ମନେ ହୁଏ । ଏହି ଜାତୀୟ ସଙ୍ଗୀତର ୪୩ ଓ ୪୪ କବିତାରେ ଆମେ ପରମ୍ପରାକୁ ଛାଡ଼ି ଥିବାରୁ କବି ଦୁଃଖ ପ୍ରକାଶ କରିଛନ୍ତି । ଓଡ଼ିଆମାନଙ୍କ କର୍ମପ୍ରତି ବିମୁଖ ଭାବକୁ ବ୍ୟଙ୍ଗ କରି ଲେଖିଛନ୍ତି

କିଏ ଶୁଣିବ ହୋ, ଆମେ ପାଠପଢ଼ି ହେଲୁ ନାଶ ।
ପାଠ ପଢ଼ି ଆମେ ହୋଇଲୁ ଦରିଦ୍ର ନମିଳିଲା ଅନ୍ନ ବାସ । (ପୃ.୪୧)

'ଗୀତ ଲହରୀ'ର ଦ୍ୱିତୀୟ ଭାଗ 'ଧର୍ମ ସଙ୍ଗୀତ' । କବି ଗତାନୁଗତିକ ଧର୍ମଧାରାରେ ବିଶ୍ୱାସ କରନ୍ତି ନାହିଁ । ଏକ ଅରୂପ ଶକ୍ତି ହିଁ ତାଙ୍କର ଦେବତା ନମୁନା ସ୍ୱରୂପ ୨୧ ନମ୍ବର ଗୀତ

(ପ୍ରଭୁ) ଯେତେ ଯନ୍ତ୍ରଣା ଦେବ ଦିଅ,
ଯନ୍ତ୍ରଣା ଅନଳେ ପୋଡ଼ି ଜାଳି ଶେଷେ
ସଂଶୋଧିତ କରି ନିଅ । (ପୃ.୬୨)

ଏହି ଗୀତରେ କବିଙ୍କର ସମର୍ପଣ ଭାବ ପ୍ରତିଫଳିତ । ତାଙ୍କ ମତରେ ଈଶ୍ୱରଙ୍କର ଆଶୀର୍ବାଦ ଯନ୍ତ୍ରଣା ରୂପରେ ଭକ୍ତ ଉପରେ ପ୍ରତିଫଳିତ । ଧର୍ମୀୟ ସଙ୍ଗୀତର ଶେଷ ଭାଗକୁ କବିଙ୍କର ନୈରାଶ୍ୟ ଭାବ ପ୍ରକଟିତ ହୋଇଛି । ସଂସାରହାଟରୁ ସଉଦାସାରି ଫେରିବା କଥା କବି ଚିନ୍ତା କରିଛନ୍ତି ।

(୩୩)

ପ୍ରଭାତି-ଝଂପ ।

ଦୁନିଆ ହାଟରେ ପଶି ହେଲି ମୁଁ ବଣା,
ଜଣା ଶୁଣା ବାଟ ଘାଟ ସବୁ ଅଜଣା ।
କି ସଉଦା ନେବି ଆସି କିସ ମୁଁ କିଣିଲି ବସି
ମାପ ଚୁପ ବେଳେ ହୋଇଗଲି ମୁଁ କଣା ।
ଖାମିନ୍ଦ ଆସିବା ବେଳେ ଯେତେ ଯାହା କହିଥିଲେ
ପାଶୋରି ସକଳ କାମ କରି ବୋଲଣା
ଯେତେ ଯାହା ସଙ୍ଗେ ମୋର ଆଣିଥିଲି, ନେଲା ଚୋର
ବାନ୍ଧିଲି ପାପ ବୁଜୁଳା ପାଇ ମାଗଣା
ହାଟ ସାରି ଗଲେ ଫେରି ଦେବା ବେଳକୁ ସୁମାରି
କି ବୋଲେ ବୋଲିବି ଏବେ ହେଲା ଭାବନା ।

'ଗୀତ ଲହରୀ' ତୃତୀୟ ଭାଗରେ ଦିଆଯାଇଥିବା ପ୍ରେମ ସଙ୍ଗୀତ ମୁଖ୍ୟତଃ ବିଭୁ ପ୍ରେମ ସଙ୍ଗୀତ ଭାବରେ ଚିତ୍ରିତ ହୋଇଛି ।

'ଗୀତ ଲହରୀ'ର ଚତୁର୍ଥ ଭାଗ କୌତୁକ ସଙ୍ଗୀତରେ ମୁଖ୍ୟତଃ ସାମାଜିକ ଦୋଷ ଦୁର୍ବଳତାକୁ ଆକ୍ଷେପ କରାଯାଇଅଛି । ଏହିପ୍ରକାର ରଚନା ଭିକାରୀ ଚରଣଙ୍କର ସ୍ୱାଭାବିକ ଲେଖା ।

ଭିକାରୀ ଚରଣ ଏହା ପୂର୍ବରୁ କରଣ ସାଆନ୍ତଙ୍କ ଢମ, ଭୋଟ, ଭୋଟ, ଭିକାରି, ଭୋଟ ସୁମାରୀ, ମାନ୍ୟବର, ଶ୍ୟାମ ଦାସ, ନେତା, ନୂଆ ଯୋଗୀ ଓ ସାଆନ୍ତିଆ ବାହା ଭଳି ବହି ଲେଖି ବେଶ୍ ଲୋକପ୍ରିୟତା ଅର୍ଜନ କରିଥିଲେ ।

ଭିକାରୀ ଚରଣ 'ସାଆନ୍ତିଆ ବାହା' ନାମକ ଏକ କ୍ଷୁଦ୍ର ଗଳ୍ପ କାବ୍ୟରେ କରଣ ସଂପ୍ରଦାୟର ଅହମିକାକୁ ବ୍ୟଙ୍ଗ କରିଛନ୍ତି । ସେ 'କରଣ ସାଆନ୍ତଙ୍କ ଢମ' ଶୀର୍ଷକ ଏକ ପୁସ୍ତକକୁ ଏକ ହଜାର ଖଣ୍ଡ ଛପାଇ ଶ୍ରୀଯୁକ୍ତ.... ମହାପାତ୍ରଙ୍କ କନ୍ୟା ବିବାହ ସମୟରେ ଉପହାର ଗୀତିକା ଭାବରେ ବାଣ୍ଟିଥିଲେ । ଏହି ପୁସ୍ତିକା ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସଙ୍କ ଦ୍ୱାରା ମୁକୁର ପ୍ରେସରେ ମୁଦ୍ରିତ ହୋଇଥିଲା । ଉକ୍ତ ପୁସ୍ତିକା ବଣ୍ଟାଯିବା ଫଳରେ ବିବାହ ଉତ୍ସବରେ ବହୁ ଗଣ୍ଡଗୋଳ ସୃଷ୍ଟି ହୋଇଥିଲା । ସେହିଦିନ ଏ ବହିରୁ ଏକ ହଜାର ଖଣ୍ଡ ଶେଷ ହୋଇଯାଇଥିଲା । (ଡଃ ଭାବଗ୍ରାହୀ ମିଶ୍ରଙ୍କର

ଭିକାରୀ ଚରଣଙ୍କ ସହିତ ସାକ୍ଷାତକାର) । ଭିକାରି ଚରଣ କରଣମାନଙ୍କର ଅହମିକାକୁ ତାଙ୍କ ନାଟକ ତଥା କାବ୍ୟକବିତାରେ ଏପରି ବିଦ୍ରୂପ କରିଛନ୍ତି ଯେ ସେ ଯଦି ନିଜେ କରଣ ସଂପ୍ରଦାୟର ହୋଇ ନ ଥାନ୍ତେ ତେବେ ସମାଜସଂସ୍କାର ପରିବର୍ତ୍ତେ ସମାଜରେ ଅନେକ ସମୟରେ ସଂଘର୍ଷ ହୋଇଯାଇଥାନ୍ତା ।

କର୍ମ ସଂଗୀତ (୧୯୪୦) : କୁଟୀରଶିଳ୍ପ ପ୍ରସାର ଉଦ୍ଦେଶ୍ୟରେ ଲିଖିତ କବିତାର ସମାହାର ହେଉଛି କର୍ମସଙ୍ଗୀତ । ଉତ୍କଳ ସାହିତ୍ୟ ପ୍ରେସରେ ମୁଦ୍ରିତ ହୋଇଥିବା ଏହି ପୁସ୍ତକରେ ଅନେକ ଛବି ସହିତ ବିଭିନ୍ନ ଶିଳ୍ପ ସଂପର୍କରେ ସରଳ କବିତା ରଚନା କରାଯାଇଛି । ସଙ୍ଗୀତ ପ୍ରିୟ ଓଡ଼ିଆ ପରିବାରରେ ଗୀତ ଗାଇ ଗାଇ କାମଟିଏ କରିଯିବାର ବିଧିକୁ ଭିକାରୀ ଚରଣ ଉପଯୁକ୍ତ ମାର୍ଗ ଭାବରେ ଗ୍ରହଣ କରି ନେଇଛନ୍ତି । ପ୍ରଥମ ଭାଗରେ ନଅଟି ଓ ଦ୍ୱିତୀୟ ଭାଗରେ ୧୫ଟି ଗୀତ ରହିଛି । ଲୋକମାନେ ଠିକ୍ ଭାବରେ ହାତକାମ ନ କରିପାରୁଥିବାରୁ କବି ଖେଦୋକ୍ତି ପ୍ରକାଶ କରିଛନ୍ତି :

'ଏବେ ଯୁଗତ ଓଲଟି ଗଲାଣିରେ
ବହି ପାଠ ତ ଅପାଠ ହେଲାଣିରେ ।
ପାଠୁଆ ପାଠ ସାରି ଦେଖ କି ହରବର
ଚାକିରି ଖୋଜି ଖୋଜି ବୁଲନ୍ତି ଘର ଘର,
ମହତ ଗଲା ବୁଡ଼ି ଡିଗିରି କାଗଜର
ବୁଡ଼ିଲା ଜ୍ଞାନ ଧ୍ୟାନ ସବୁ ଏବେ ତାଙ୍କର ।' (ପୃ.୨୭)

କବି ଭିକାରୀ ଚରଣଙ୍କ କବିତା ସଂପର୍କରେ ଶ୍ରୀ ଶଶିଭୂଷଣ ରାୟ ଯେଉଁ ମନ୍ତବ୍ୟ ପ୍ରଦାନ କରିଥିଲେ ଭିକାରୀ ଚରଣଙ୍କ ସୃଷ୍ଟି ମୂଲ୍ୟାୟନ ସମ୍ପର୍କରେ ଏହା ଏକ ଅମୂଲ୍ୟ ଅଭିମତ :

'ରାୟ ବାହାଦୁର ଭିକାରୀ ଚରଣ ପଟ୍ଟନାୟକ ମହାଶୟଙ୍କର କବିତା ସମୂହ ବିଭିନ୍ନ ସମୟରେ ବିବିଧ ପତ୍ରିକାରେ ପାଠକରି ମୁଗ୍ଧ, ଚମତ୍କୃତ ଓ ଧନ୍ୟ ହୋଇଅଛି । ଏ ଗୁଡ଼ିକ ବହୁବର୍ଷ ପୂର୍ବେ ରଚିତ ହୋଇଥିଲେ ହେଁ ଚିର ନୂତନବତ୍ ପ୍ରତୀୟମାନ । ଗୋଟିଏ ଗୋଟିଏ କବିତା ଚାରିଥର ପାଠ କରି ସୁଦ୍ଧା ତୃପ୍ତ ହୋଇନାହିଁ । ତାହାଙ୍କ କଳ୍ପନାରେ ନୂତନତ୍ୱ ଓ ଚିତ୍ରରେ ପରିସ୍ଫୁଟନ ରହିଅଛି ଏବଂ ତାହାଙ୍କର କୌତୁକମଣ୍ଡିତ ବିଦ୍ରୂପର ଶରଗୁଡ଼ିକ ଅବହେଳାର ସାମଗ୍ରୀ ନୁହେଁ ।

ଭିକାରି ବାବୁ କୁଟୀରଶିଳ୍ପ ଜଗତରେ ଯେପରି ନବ ନବ ଉଦ୍‌ଭାବନାଶକ୍ତିପ୍ରସୂତ ଯୁଗାନ୍ତର କରିଅଛନ୍ତି କବିତା ରାଜ୍ୟରେ ସେହିପରି ସର୍ବଶେଷ କ୍ଷମତାର ପରିଚୟ ଦେଇଅଛନ୍ତି । ରଚନାରେ ଭିକାରୀ ବାବୁଙ୍କ ଲେଖନୀ ସ୍ୱାଧୀନ, ଅଥଚ ତାହାଙ୍କ ଭାଷା ଉଚ୍ଛୃଙ୍ଖଳ ନୁହେଁ । ଭିକାରୀ ବାବୁ ସହଜ ରସିକ, ତାଙ୍କର ହାସ୍ୟ, ଲଜ୍ଜାଶୀଳ, କରୁଣ ଧୀରଗତି ବିଶିଷ୍ଟ । ତାହାଙ୍କର ନାଟକସମୂହ ଓ କବିତାଗୁଚ୍ଛରେ ଯେଉଁ ବିଶେଷ ଶକ୍ତି ସମ୍ପନ୍ନତାର ଆଦର୍ଶ ଦେଖାଇ ଅଛନ୍ତି, ତାହାର ତୁଳନା କାହିଁ ? ଏହି ଅସାଧାରଣ କ୍ଷମତା, କୃତିତ୍ୱ, ଲିପି କୌଶଳ, ନିରପେକ୍ଷତା ଏବଂ ପ୍ରତିଭାର ପରିଚୟ ଆମ୍ଭମାନଙ୍କ ମନରେ ଚିର ମୁଦ୍ରିତ ହୋଇ ରହିଅଛି । କାଠିନ୍ୟରେ କୋମଳତା, ଗାମ୍ଭୀର୍ଯ୍ୟରେ ତରଳତା, ଧର୍ମ ଉପରେ ରସିକତା ସଂମିଶ୍ରିତ ହୋଇ ତାହାଙ୍କ କବିତସମୂହ ପରମ ଉପାଦେୟ ସାମଗ୍ରୀରେ ପରିଣତ ହୋଇଅଛି । ଏଗୁଡ଼ିକୁ ପଢ଼ି କେତେବେଳେ ହସିବାକୁ, କେତେବେଳେ କାନ୍ଦିବାକୁ, କେତେବେଳେ ମାତି ଯିବାକୁ ହୋଇଥାଏ । ଶ୍ରାବଣର ଅନର୍ଗଳ ବର୍ଷଣ ଉତ୍ତାରୁ ନବଭାନୁର କିରଣ ଯେପରି ମଧୁର, କଣ୍ଟକବେଷ୍ଟିତ ଗୋଲାପର ସୌରଭ ଯେପରି ମିଷ୍ଟ, ଏ କବିତାଗୁଡ଼ିକ ସେହି ଲକ୍ଷଣାକ୍ରାନ୍ତ ବୋଲି ସର୍ବଦା ପ୍ରତୀୟମାନ ।

ନିଭୃତ ନିଳୟ, ଧବଳେଶ୍ୱର, ତା୨୨.୦୨.୪୯ ଶ୍ରୀ ଶଶିଭୂଷଣ ରାୟ ।

କବି ଭିକାରୀ ଚରଣ ସବୁ ଶ୍ରେଣୀର ଓ ସବୁ ବୟସର ଲୋକଙ୍କ ପାଇଁ କବିତା ରଚନା କରିଛନ୍ତି । ୧୯୫୮ରୁ ୧୯୬୦ ଭିତରେ ତାଙ୍କର ସମସ୍ତ କବିତାଗୁଡ଼ିକ ଗ୍ରନ୍ଥାବଳୀ ଭାବରେ ସଙ୍କଳିତ ହୋଇଥିଲା । ଏହି ସଂକଳନରେ ମୁଖବନ୍ଧ ଲେଖିଥିଲେ କଳିଙ୍ଗ ଭାରତୀର ପ୍ରତିଷ୍ଠାତା ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ । ସମସ୍ତ କବିତାଗୁଡ଼ିକ ବିଭାଗୀକରଣ କରାଯାଇ 'ସ୍ୱଜାତି କରଣୀ(ମର୍ମବାଣୀ), ସ୍ୱଜାତି କରଣୀ (ଜାତିର ଗାରିମା), ସ୍ୱଦେଶ ଦର୍ପଣ(ପ୍ରଥମ ଖଣ୍ଡ), ଏଣୁ ତେଣୁ, ଶିରୋନାମାରେ ସଙ୍କଳିତ ହୋଇଥିଲା । ଦୁଃଖର କଥା ତାଙ୍କ ପରଲୋକପରେ ତାଙ୍କ ଲେଖାର ପ୍ରଚାର ପ୍ରସାର ଠିକ୍ ଭାବରେ ହୋଇନପାରିବାରୁ ଭିକାରୀ ଚରଣ ତାଙ୍କ ପର ପୀଢ଼ିର ମନରୁ ଲିଭିଗଲେ । ତାଙ୍କ କବିତାର ଅଧିକାଂଶ ପଦ ଉଦ୍ଧାର କରିବାକୁ ଲୋଭ ହୁଏ । ସ୍ଥାନାଭାବରୁ ସେ ସବୁ ପ୍ରଦାନ କରିବା ସମ୍ଭବ ନୁହେଁ । ଭିକାରୀ ଚରଣଙ୍କ ସୃଷ୍ଟି-ସମ୍ପଦ ଆଲୋଚନାବେଳେ ଗୋଟିଏ କଥା ମନେ ରଖିବାକୁ ହେବ ଯେ, ତାଙ୍କ କବିତାରେ କଳ୍ପନା ବିଳାସିତାର ମାତ୍ରା ଯଥେଷ୍ଟ କମ୍ । ବାସ୍ତବ ଜୀବନରେ ଯାହା ସେ ଅନୁଭବ କରିଛନ୍ତି ଜାତିର ଉନ୍ନତି ପାଇଁ ତାକୁ ବିବିଧ ମାର୍ଗରେ ଉପସ୍ଥାପନ

କରିବାକୁ ଚେଷ୍ଟା କରିଛନ୍ତି । ତାଙ୍କ ଲେଖା ପ୍ରକାଶ ପାଇଁ ସେ ପ୍ରକାଶକଙ୍କର ଦ୍ୱାରସ୍ଥ ହୋଇ ନାହାନ୍ତି । ନିଜସ୍ୱ ଆୟରୁ ଯାହା ସମ୍ଭବ ସେପରି ଉଦ୍ୟମ ଅବ୍ୟାହତ ରଖିଛନ୍ତି । ସେ ପୁସ୍ତକରୁ ବିକ୍ରୟ ମୂଲ୍ୟ ଆସୁଥିଲା କି ନାହିଁ କହିବା ସମ୍ଭବ ନୁହେଁ ।

ଭିକାରୀ ଚରଣଙ୍କ ବ୍ୟଙ୍ଗ କବିତା ସଂପର୍କରେ ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ ଅଭିମତ ପ୍ରଣିଧାନ ଯୋଗ୍ୟ । "କୈଶୋର ଓ ଯୌବନରେ ମୁଁ 'ଉତ୍କଳ ସାହିତ୍ୟ' ପତ୍ରିକାରେ ତାଙ୍କ ବ୍ୟଙ୍ଗ କବତା ରାଜି ପାଠକରି ଖାଣ୍ଟି ଓଡ଼ିଆ ଭାଷା ଉପରେ ତାଙ୍କ ଦଖଲ ଦେଖି ମୁଗ୍ଧ ଓ ଚମତ୍କୃତ ହୋଇଥିଲି । କଟକରେ ରହି ତାଙ୍କ ସହିତ ପରିଚିତ ହେବାର ସୌଭାଗ୍ୟ ଲାଭ କଲାବେଳକୁ ସେ ଲିପିଶିଳ୍ପ ଛାଡ଼ିଦେଇ କୁଟୀରଶିଳ୍ପର ପୁରୋଧା ହୋଇ ସାରିଥିଲେ । ତଥାପି ରସଗର୍ଭ ଭାଷା କହିବାର ଚତୁରତାରେ ସେ ସେତେବେଳେ ଯେପରି ଆଜି ମଧ୍ୟ ଅଦ୍ୱିତୀୟ । ଆଜି ମଧ୍ୟ ସେ କଲମ ଧରିଲେ ତହିଁରୁ ଯେଉଁ ବ୍ୟଙ୍ଗ ବା ଥଟଲି କବିତା ଝରିବ ତାକୁ ଟପେଇ ସେ ଢଙ୍ଗର କବିତା ଲେକିଦେବ ଏପରି ବାହାଦୁର ପୁଅ ଓଡ଼ିଶାରେ ଆଉଜଣେ ନାହିଁ । ଏ ବିଷୟରେ ତାଙ୍କର ପଟାନ୍ତର କେବଳ ସେ । ବ୍ୟଙ୍ଗ କବତାର ଚାବୁକ୍ ଲଗାଇ ଶିଳ୍ପ-ବାଣିଜ୍ୟ ପରାଙ୍ମୁଖ ଚାକିରୀ-ସର୍ବସ୍ୱ ଜଡ଼ ଓଡ଼ିଆ ସମାଜର ସୁଖସ୍ୱପ୍ନ ଭାଙ୍ଗିବା ତାଙ୍କର ଉଦ୍ଦେଶ୍ୟ । ଜୀବନର ଭଣ୍ଡାମୀ, ଆନ୍ତରିକତା ବିହୀନତା ଓ କୃତ୍ରିମତା ପ୍ରତି ସେ ଅତ୍ୟନ୍ତ ଅସହିଷ୍ଣୁ । କି ବ୍ୟକ୍ତି ବିଶେଷ, କି ଗୋଷ୍ଠୀ, କି ସମାଜ କେହି ତାଙ୍କ ନିର୍ଦ୍ଦୟ କଷାଘାତରୁ ନିଷ୍କୃତି ପାଇ ନାହାନ୍ତି । ଆମ ଦେଶର ଇଂରାଜୀ ପଢ଼ୁଆମାନେ ବ୍ୟଙ୍ଗ କବିତା ବିଷୟ କହିଲାବେଳକୁ ଇଂଲଣ୍ଡର କବି ପୋପ୍ ଓ ଆଡିସନଙ୍କ ବିଷୟରେ ଭଡ଼ାଏ ଭଡ଼ାଏ କଥା କହିବେ । ସ୍ୱଦେଶରେ ଏ ଭିକାରୀ ଚରଣଙ୍କ ନାମ ବୋଧହୁଏ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ତୁଣ୍ଡକୁ ଆସିବ ନାହିଁ । ଭିକାରୀ ଚରଣଙ୍କ ବ୍ୟଙ୍ଗ କବିତାବଳୀର ଏ ସଂଗ୍ରହକୁ ପଢ଼ି ସାରିଲା ପରେ ମୋର ମନେହୁଏ ଯେ ସେ ଏକାଧାରାରେ ଓଡ଼ିଶାର ପୋପ୍ ଓ ଆଡ଼ିସନ୍ । ବରଂ ଏହାଙ୍କ ସର୍ବଜନବୋଧ୍ୟ ସରଳ ଖାଣ୍ଟି ଓଡ଼ିଆ ଭାଷା ଦେଖିଲେ ମନେହୁଏ ଇଂଲଣ୍ଡର ଉପରୋକ୍ତ କବିଦ୍ୱୟଙ୍କ କୃତିତ୍ୱଠାରୁ ମଧ୍ୟ ଏହାଙ୍କ କୃତିତ୍ୱ ସମଧିକ ।

.....ବ୍ୟକ୍ତିଗତ ଈର୍ଷାରେ ଚାଳିତ ହୋଇ କାହାକୁ ଅପଦସ୍ଥ କରି ନୀଚ ଆନନ୍ଦ ଲାଭ କରିବାକୁ ସେ କୁତ୍ରାପି ଲେଖନୀ ଚାଳନ କରି ନାହାନ୍ତି । ଯେଉଁ ଯେଉଁଠି ବ୍ୟକ୍ତି ବିଶେଷ ବା ଗୋଷ୍ଠୀ ବିଶେଷ ତାଙ୍କ କଠୋର କଟାକ୍ଷରେ ଜର୍ଜରିତ ହୋଇ ଅଛନ୍ତି ସେ ସେଠାରେ ସେମାନେ ଯେଉଁ ଯେଉଁ ସାମାଜିକ ଅଧୋଗତିର ପ୍ରତିନିଧି

ବରଂ ତା ପ୍ରତି ସେ ଲକ୍ଷ୍ୟ କରି ଅଛନ୍ତି । ଇଂରେଜ ଅମଳରେ ଐତିହାସିକ ଓଡ଼ିଆ ଜାତିର ଯେତେଯେତେ ପ୍ରକାର ଅଧୋଗତି ହୋଇଅଛି ସେ ସବୁକୁ ଭିକାରୀ ଚରଣଙ୍କ ପରି ଏଡ଼େ ବଳିଷ୍ଠ ଭାବରେ ଅନ୍ୟ କୌଣସି କବି ବର୍ଣ୍ଣନା କରିଅଛନ୍ତି ବୋଲି ମୋର ମନେ ହୁଏ ନାହିଁ । ଏହି ବ୍ୟଙ୍ଗ କବିତାର ସମୁଚ୍ଚୟକୁ ଓଡ଼ିଆର ଭବିଷ୍ୟତ ବଂଶଧରମାନେ ଅଧୋଗତ ସମାଜର ଅବିକଳ ଚିତ୍ର ରୂପେ ବହୁ ମୂଲ୍ୟବାନ ବୋଲି ମନେ କରିବେ ......।

ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ, କଳିଙ୍ଗ ଭାରତୀ ଭବନ, ୨୨.୦୫.୪୯''

ଭିକାରୀ ଚରଣଙ୍କ କବିତା 'ଚାରଣ ଗୀତିକା' ପରି ସାଧାରଣ ଜନଜୀବନରେ ବେଶ୍ ପ୍ରସାର ଲାଭ କରିଥିଲା । ବର୍ତ୍ତମାନ ଭିକାରୀ ଚରଣଙ୍କ କବିତା ପୁସ୍ତକ ବଜାରରେ ଦୁଷ୍ପ୍ରାପ୍ୟ । ତାଙ୍କର ବିଭିନ୍ନ ପୁସ୍ତକରୁ କୋଡୋଟି କବିତାକୁ ନମୁନା ଭାବରେ ପ୍ରଦାନ କରାଗଲା :

''ପାଠଶାଠ ଯେତେ ପଢ଼ିବ ପଢୁଥା
ଶିଳ୍ପ ବାଣିଜ୍ୟ ହିଁ ଦେଶର ଶିରୀ,
ଦେଶ ଶିରୀ ତେତେ ତୁଟିଯାଉଥିବ
ଯେତେ ବଢୁଥିବ ଗୋଲାମ ଗିରି ।
ଦେଶର ବାଣିଜ୍ୟ ଶିଳ୍ପ ବୃଦ୍ଧି ହେଲେ
ଦେଶ ଲକ୍ଷ୍ମୀ ସ୍ଥିର ରହିବେ ଦେଶେ
ନ ହେଲେ ତୁଚ୍ଛାକୁ ହାଉ ହାଉ ହୋଇ
ହାଉଓ୍ୱାରେ ମିଶି ଯିବେଟି ଶେଷେ ।

(କଲିକତିଆ ଭାଇ, ଉତ୍କଳ ସାହିତ୍ୟ, ୧୩୧୭ ସାଲ ମାର୍ଗଶିର ୨୩ଶ ଭାଗ ଅଷ୍ଟମ ସଂଖ୍ୟା)

'ଦେଶସେବା' କବିତାରେ ଦେଶସେବକର ନିଷ୍ଠାହୀନ କର୍ମକୁ ସମାଲୋଚନା କରାଯାଇଛି । ତଥାକଥିତ ଦେଶସେବା କେବଳ ଗୋଟିଏ ମୁଖା, ଅସଲକର୍ମୀ ପ୍ରଚାରକୁ ଅପେକ୍ଷା କରେନାହିଁ । ବାକ୍ୟବୀରମାନେ ମୁହଁରେ ସବୁ ସାରି ଦିଅନ୍ତି, ସେମାନେ କୌଣସି କର୍ମର ନୁହନ୍ତି । କବି 'କଥାକଲ୍ପ' କବିତାରେ ବିଦ୍ରୂପ କରି କହିଛନ୍ତି :

"କାନ୍ଦନା କାନ୍ଦନା ଉତ୍କଳ ମାତା ଗୋ
ପୁଏ ସବୁ ଯୋଗ୍ୟ ହେଲେଣି,
ଦେଖି ବୁଝୁଥିବ କଥା କାରଖାନା
କେତେ କିଏ ଖୋଲି ଦେଲେଣି ।

କଥା-କଳ ସବୁ ସଜାଡ଼ିଲେଣି ଗୋ
ତୁମ୍ଭ ଭାଗ୍ୟ ହେଲେ ତା ପରେ
ବଳେ ବଳେ ଉଠି ଗଗନେ ଉଡ଼ିବ
ନକର ଭାବନା ଚିତ୍ତରେ ॥

(କଥା-କଳ, ଉତ୍କଳ ସାହିତ୍ୟ, ୧୩୨୬ ସାଲ ବୈଶାଖ ୨୨ ଭାଗ ପ୍ରଥମ ସଂଖ୍ୟା)

ସେତେବେଳେ ଭିକାରୀ ଚରଣ ଯାହା ଲେଖୁଥିଲେ ଏବେ ବି ଓଡ଼ିଶାରେ କଥାରେ କଥାରେ କାରଖାନା ବସାଇବାର ନଜିର କ'ଣ କମ୍ ଅଛି ? 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ପାଇଥିବା 'ଶୋଇଥା, ଶୋଇଥା' କବିତା ଉତ୍କଳୀୟମାନଙ୍କ ପାଇଁ ଏକ ଶାଣିତ ବ୍ୟଙ୍ଗ :-

ଓଡ଼ିଆ ପୁଅଙ୍କ ଓଡ଼ିଆ କପାଳ
ଜଗତେ ନଥିବେ କାହିଁ
ଶୂନ୍ୟ ଘର ତାଙ୍କ ଶୂନ୍ୟରେ ପୂରିବ
ସମସ୍ତେ ଦେଖିବେ ଚାହିଁ ।

ମିଛେ ଆମ୍ବ ଗଛେ ମିଛେ ଆମ୍ବ ଫଳେ
ମିଛେ ମିଛେ ଆମ୍ବ ପାଚେ
ମିଛେ ମିଛେ ତୋଳି ମିଛେ ମିଛେ ଖାଇ
ଓଡ଼ିଆ ପୁଅଟି ନାଚେ ।
କାହୁଁ କାହୁଁ ଲୋକେ ବାଣିଜ୍ୟ କୌଶଳେ
ଓଡ଼ିଆଙ୍କ ଘରେ ପଶି
ବୋହି ନେଉଛନ୍ତି ଖୁଦ କଣିଟିକ
ଓଡ଼ିଆ ଦେଖନ୍ତି ବସି । (ଉଷା, ୧୩୨୭, ମାଘ)

ସେହିପରି 'ଦେଖୁଥା, ଦେଖୁଥା' (ଉସା ୧୩୨୭ ଫାଲଗୁନ) 'ସମ୍ମିଳନୀ ସଂପାଦକ' (ଉସା, ୧୩୨୬ ଫାଲଗୁନ), ଶ୍ୟାସଦାସ (ଉସା, ୧୩୨୪, ଆଶ୍ୱିନ), ଓଡ଼ିଆ ଭାଇ (ଉସା, ୨୦/୧୨) 'ଗଣୁଥା, ଗଣୁଥା'(ଉସା, ୨୪/୬) ମଧ ଶାଣିତ ବ୍ୟଙ୍ଗରେ ଭରା । 'ବଢୁଥା, ବଢୁଥା'ରେ ଲେଖକ ଅତି କଠୋର ଭାବରେ କହିଛନ୍ତି-

ଧନ ଦଉଲତ ବଢ଼ିଲେ କାହାର
 ମାନରେ ବଢ଼ିଲେ କେହି
ଶତଗୁଣେ ଆମ୍ଭ ଦାରିଦ୍ର୍ୟ ବଢ଼ିଛି
 ନୋହେ କି ବଢ଼ିବା ଏହି ?
ବଢୁଅଛି ଦେଶେ କାଙ୍ଗାଳଙ୍କ ସୀମା
 ବଢୁଅଛି ଆମ୍ଭ ଦୁଃଖ,
ପାଠୁଆ ଭାଇଙ୍କ ବିବାହ ବେଳକୁ
 ବଢୁଅଛି ଯଉତୁକ ।(ଉସା, ୨୪/୬, ୧୩୨୮ ସାଲ)

ଓଡ଼ିଆ ଜାତିକୁ ବ୍ୟଙ୍ଗ କରି 'ଡରୁଥା, ଡରୁଥା'ରେ ଅତି କଠୋର ଭାବରେ ବ୍ୟଙ୍ଗ କରିଛନ୍ତି -

ଡରୁଥା ଡରୁଥା ଭାଇ ଡରୁଥାରେ ବସି
ଡରି ଡରି ଜୀବନଟା ଯିବ ଦିନେ ଖସି ।
ବାଣିଜ୍ୟକୁ ଡର କାଳେ ମୂଳ ବୁଡ଼ିଯିବ
ଚାଷ କରି ଡର କାଳେ ଫଳ ନ ଫଳିବ ।
ଡରୁବୋଲି ସିନା ଆମେ ଡରକୁଳା ଜାତି
ଜାଣି ଜାଣି ସର୍ବେ ଆସି ଆମକୁ ଡରାନ୍ତି ।
ଡରୁଥା ଡରୁଥା ଭାଇ, ଡରୁଥାରେ ବସି
ଭୋକ ନ ମରିବ ଲୁଚି ଚୋବାଇଲେ ଘଷି । (ଉସା, ୧୩୩୦ ସାଲ ଚୈତ୍ର)

ମହାତ୍ମା ଗାନ୍ଧୀଙ୍କ 'ଲବଣ ସତ୍ୟାଗ୍ରହ'ର ଅନେକ ପୂର୍ବରୁ ୧୯୨୨ ମସିହାବେଳକୁ ଭିକାରୀ ଚରଣ ସେ ସମୟର ଲୋକଙ୍କ ଅସନ୍ତୋଷକୁ କବିତା ଆକାରରେ, ନାଟକର ଚରିତ୍ର ଭାରେ ପ୍ରକାଶ କରିଛନ୍ତି । ଇଂରେଜ ସରକାରଙ୍କ ଲବଣ ନୀତି ସଂପର୍କରେ ଲେଖିଛନ୍ତି

କାଳକୁ କାଳ ଲୁଣ ଖାଇବା ପାଇଁ/ବ୍ୟବସ୍ଥା ଖଞ୍ଜିଥିଲେ ବ୍ରହ୍ମାଣ୍ଡ ସାଇଁ,
ରୋକିଲେ ସରକାର ସେତିକି ଧରି/କ୍ଷେତରେ ତୁଣ୍ଡି ବନ୍ଧା ବଳଦ ପରି ।

(ଉସା, ୧୩୨୯ ସାଲ ବୈଶାଖ) 'ହରିଶ୍ଚନ୍ଦ୍ର' (ଉସା ୧୩୩୦ ଫାଲଗୁନ) କବିତାରେ ବ୍ୟକ୍ତିର ଅସହାୟତା ପ୍ରକାଶ ପାଇଛି । ରାଜା ହରିଶ୍ଚନ୍ଦ୍ର ଚଣ୍ଡାଳ ପାଖରେ ବିକ୍ରି ହୋଇଥିବାରୁ ବା ଚାକିରି କରିଥିବାରୁ ତାଙ୍କର କୋମଳ ହୃଦୟ ନିଷ୍ଠୁର ହୋଇଯାଇଥିଲା । ସେ ବ୍ୟକ୍ତିଗତ ଇଚ୍ଛାପ୍ରକାଶ କରିପାରୁ ନଥିଲେ । ଏକ ପୌରାଣିକ କାହାଣୀକୁ ଉପଲକ୍ଷ୍ୟ ଦେଇ ଭିକାରୀ ଚରଣ ଓଡ଼ିଆ ଜାତିକୁ ଲକ୍ଷ୍ୟକରି ନାନା ବ୍ୟଙ୍ଗ କରିଛନ୍ତି ତଥା ଉପଦେଶ ପ୍ରଦାନ କରିଛନ୍ତି । 'ଅପାଠୁଆ ବାଣୀ' (ଉତ୍କଳ ସାହିତ୍ୟ ୧୩୩୦ ଭାଦ୍ର)ରେ ସେହିପରି ସାମର୍ଥ୍ୟହୀନ ପାଠୁଆ ଓ କର୍ମକ୍ଷମ ଅପାଠୁଆ ସଂପର୍କରେ ଉଲ୍ଲେଖ କରିଛନ୍ତି । ପାଠୁଆ ହୋଇ ଯଦି ସେ ପାଠ କାମକୁ ନ ଲାଗିଲା

''ପାଠ ପଢ଼ି ଯେଉଁ ଗଉଁଟି ଶିଖିଛ
ନଇକି ପକାଇ ଦିଅ,
ଆମ୍ଭ ସଙ୍ଗେ ମିଶି ଆମ୍ଭ ଭାଇଗଣେ
ଆମ୍ଭରି ଦୀକ୍ଷାଟି ନିଅ ।''

ଭିକାରୀ ଚରଣ ଜୀବନସାରା ଦୀନଦୁଃଖୀଙ୍କ ପାଇଁ ଚିନ୍ତା କରୁଥିଲେ । ସମସ୍ତେ ଯଦି ଆତ୍ମନିର୍ଭରଶୀଳ ହୋଇପାରନ୍ତେ ତେବେ ପରପାଖରେ, ସରକାରଙ୍କ ପାଖରେ ହାତ ପତାଇବାର ଆବଶ୍ୟକତା ପଡ଼ନ୍ତା ନାହିଁ । ଯେଉଁମାନଙ୍କ ପାଇଁ ସେ ଓକିଲାତି ଭଳି ଅର୍ଥକାରୀ ଓ ସମ୍ମାନଜନକ ବ୍ୟବସାୟକୁ ଛାଡ଼ିଲେ, ସେଥିରେ ଉତ୍ସାହ ପାଇଲେ ନାହିଁ କି ଯେଉଁମାନଙ୍କ ପାଇଁ ଏହା କରିଥିଲେ ତାହା ସଫଳ ହେଲା ନାହିଁ । ତେଣୁ ଭିକାରୀ ଚରଣଙ୍କର ମାର୍ମିକ ଅଭିବ୍ୟକ୍ତି

''ଆମ ଦେଶେ ଆମେ ଗରିବଙ୍କର
ଦୀନଦଶା ଭାଳି ପିଲାଟି ଦିନରୁ
ଘାଣ୍ଟି ହେଉଥିଲା ମନ ମୋହର ।
ତାଙ୍କରି ସେବାରେ ଖଟିବା ପାଇଁ
ବଡ଼ ହେଲାପରେ ମନ ଦମ୍ଭ କରି
ଲାଗି ଯାଇଥିଲି ଆସି ମୁଁ ଧାଇଁ ।
ଥିଲି ଆଗେ କଉଡ଼ିଆ ଧନ୍ଦାରେ

ଧନକୁ ନ ଚାହିଁ                    ମନକୁ ମନାଇ
ପଶିଗଲି ଆସି ଏଇ ଛନ୍ଦାରେ ।''

ଜାତିପ୍ରାଣ ମଧୁସୂଦନଙ୍କ ପ୍ରେରଣାରେ ଭିକାରୀ ଚରଣ ନିଜକୁ 'ଭିକାରି' ଭାବରେ ଦୀନ ଦରିଦ୍ରଙ୍କ ପ୍ରତି ଅନ୍ତରଙ୍ଗ ଭାବ ପୋଷଣ କରିଥିଲେ

'ହେବାରୁ ଗରିବ ତାଙ୍କ ସଂଗରେ
ସହଜେ ବୁଝିଲି                    କି ଦୁଃଖ ତାଙ୍କର
ଭୋଗି ଦୁଃଖ ଦଶା ନିଜ ଅଙ୍ଗରେ ।

ଭିକାରୀ ଚରଣଙ୍କ କବିତାର ଅଧିକାଂଶ ପଦ ଉଦାହରଣ ଭାବରେ ଦିଆଯାଇ ପାରିବ । ଚାରଣ କବି ଭାବରେ ସେ ସାରା ସମାଜର ମର୍ମବାଣୀକୁ ଉଖାରି ଉଖାରି ଦେଖାଇଛନ୍ତି

'କେ ଜାଣି କାହିଁକି ଓଡ଼ିଆ ଶୋଣିତ
                    ଥଣ୍ଡା ହୋଇଗଲା ଆସି
ହାଣ କାଟ ମାର, ଯେତେ ଯାହା କର
                    ଓଡ଼ିଆ ଉଡ଼ାଏ ହସି ।
କାହୁଁ କାହୁଁ ଲୋକେ ବାଣିଜ୍ୟ କୌଶଳେ
                    ଓଡ଼ିଆର ଘରେ ପଶି
ବୋହି ନେଉଛନ୍ତି ଖୁଦ କଣିଟିକ
                    ଓଡ଼ିଆ ଦେଖନ୍ତି ବସି ।

ତେଣୁ କବି ଦୁଃଖ ଓ ପରିହାସରେ କହୁଛନ୍ତି

ଶୋଇଥା ଶୋଇଥା ଓଡ଼ିଆ ପୁଅରେ
                    ଶୋଇବାଟା ବଡ ମଜା
ନାହିଁ ତ ପରୁଆ ସମସ୍ତେ ଜାଣନ୍ତି
                    ବଡ଼ଥିଲେ ବାପ ଅଜା ।

ଭିକାରୀ ଚରଣ କେବଳ ବିଦ୍ରୂପ କରିନାହାନ୍ତି, ଓଡ଼ିଆ ଜାତିର ପୁନରୁତ୍‌ଥାନ ପାଇଁ କବି ଦେଶବାସୀଙ୍କୁ ଆହ୍ୱାନ ଦେଇଛନ୍ତି : 'ଉଠ ହେ ଉଠହେ ଓଡ଼ିଆ ବୀର ଉଠହେ ମାତି/ଦେଶ ଲୋଡ଼ିଲାଣି ତୁମକୁ ଉଠ ଫୁଲାଇ ଛାତି । ଭାଇ ଭାଇ କଳି କନ୍ଦଳ ଭୁଲିଯାଅ ସକଳ/ସର୍ବେ ମିଳିମିଶି ଦେଖାଇ ନିଜ ବଳ କୌଶଳ ।''

ଜୀବନର ରାତ୍ରିର କଳା ପରଦା ନଇଁ ଆସିବା ଆଗରୁ ଭିକାରୀ ଚରଣ 'ଅବସାଦ ବାଣୀ'ରେ ନିଜର ଜୀବନର ଲକ୍ଷ୍ୟକୁ ବ୍ୟକ୍ତ କରିଯାଇଛନ୍ତି ।

'ଯେବେ ଯା ଦେଖିଛି ଯେଉଁ କ୍ଷେତ୍ରରେ
ଲେଖିଯାଇଅଛି ଫିଟାଇ ସେତିକି
ମେଲାଣି ଢାକୁଣୀ ଖୋଲା ଚିତ୍ରରେ ।
ଛାଡ଼ି ନାହିଁ ଗ୍ରାମ କୁଟୀର କନ୍ଦି
ଭିକାରି କୁଡ଼ିଆ ପ୍ରମୋଦ ପଡ଼ିଆ
ରାଜ ପ୍ରାସାଦର ଅନ୍ଧାରି ସନ୍ଧି ।'

ପୁଣି ଲେଖିଛନ୍ତି

ଲେଖାଗୁଡ଼ା କେହି ପଢ଼ିବେ ଯେବେ
ସମାଜ ଭିତିରି ଭେଉ କିଛି କିଛି
ବୁଝିବେ ସହଜେ ହେଜିବେ ତେବେ ।
କିନ୍ତୁ ଜାଣେ କେହି ପଢ଼ିବେ ନାହିଁ
ପଢ଼ିଲେ ଚିଡ଼ିବେ କେହି ବା ହୂଡ଼ିବେ
ଭିଡ଼ିବେ ସେ ଗୁଡ଼ା ପୋଡ଼ିବା ପାଇଁ ।'

କବି କାଳକୁ ଅପେକ୍ଷା କରିଛନ୍ତି, ଏ ମଣିଷ ହୁଏତ ହସିପାରେ, ରଷିପାରେ, ଅବହେଳାରେ ଫିଙ୍ଗି ଦେଇପାରେ କିନ୍ତୁ ନିଜର ଲକ୍ଷ୍ୟ ସାଧନ ପାଇଁ ଯେଉଁ ରଚନା କରିଛନ୍ତି ତାହା ବିଫଳ ହେବ ନାହିଁ । କେହି ଦିନେ ନା ଦିନେ ତାକୁ ଆଦର କରିବ ।

'ମଲାପରେ ଘର ଝାଡ଼ିବା ବେଳେ
ଏଣେ ତେଣେ ଟିପାଟିପି ପଡ଼ିଥିବ
ଖୋଲିଲେ ସେ ସବୁ ମିଳିବ ହେଳେ ।
ପଢ଼ିଲେ କି କେହି ଶୁଣିବେ ଯେବେ
ହସନ୍ତୁ କି ଅବା ରୁଷନ୍ତୁ ସେ ପଛେ
ବୁଝିବି ମୋ ଶ୍ରମ ସଫଳ ତେବେ ।'

## ଗଦ୍ୟ ରଚନା

ଓଡ଼ିଆ ସାହିତ୍ୟରେ ଭିକାରୀ ଚରଣଙ୍କ ସୁଖ୍ୟାତି ବିଶେଷତଃ ନାଟକ ପାଇଁ ଗୌଣତଃ କବିତା ପାଇଁ । ଭିକାରୀ ଚରଣଙ୍କ ଗଦ୍ୟ ରଚନା ଆୟତନ ଓ ବିଷୟପରିଧି

ଦୃଷ୍ଟିରୁ କିନ୍ତୁ ଊଣା ନୁହେଁ । ଓଡ଼ିଶାର କୁଟୀର ଶିଳ୍ପ ସଂପର୍କରେ, ପ୍ରାଥମିକ ଶିକ୍ଷା ସଂପର୍କରେ ତାଙ୍କର ତ ପୁସ୍ତକ ସବୁ ରହିଛି, ତା ବ୍ୟତୀତ ଅନ୍ୟାନ୍ୟ ବହୁ ବିଷୟରେ ତାଙ୍କର ଶତାଧିକ ପ୍ରବନ୍ଧ 'ଉତ୍କଳ ସାହିତ୍ୟ', ମୁକୁର, ବାରୁଣୀ, ଓ ଭଞ୍ଜପ୍ରଦୀପ ଆଦି ସାହିତ୍ୟ ପତ୍ରିକାରେ ତଥା ଉତ୍କଳ ଦୀପିକା, ସମ୍ବଲପୁର ହିତୈଷିଣୀ ଆଦି ସମ୍ବାଦପତ୍ରରେ ପ୍ରକାଶିତ ।

ଭିକାରୀ ଚରଣଙ୍କ ପ୍ରବନ୍ଧାବଳୀ ବିଷୟ ବୈଚିତ୍ର୍ୟ ଦୃଷ୍ଟିରୁ ଅନୁପମ । ଓଡ଼ିଶାର ରାଜନୀତି, ଅର୍ଥନୀତି, ଶିଳ୍ପାୟନ ସହିତ ଶିକ୍ଷା ଓ ସାହିତ୍ୟ ତାଙ୍କ ପ୍ରବନ୍ଧାବଳୀରେ ମୁଖ୍ୟତଃ ଅଲୋଚିତ । ଐତିହାସିକ କାରଣରୁ ବିଭିନ୍ନ ଦିଗରେ ପଛରେ ପଡ଼ିଯାଇଥିବା ଗୋଟିଏ ଜାତିପାଇଁ ଆକୁଳତା କେବଳ କବିତାମାନଙ୍କରେ ନୁହେଁ ଏହି ପ୍ରବନ୍ଧଗୁଡ଼ିକରେ ବି ଅଭିବ୍ୟକ୍ତ । 'ଭଞ୍ଜପ୍ରଦୀପ'ର ଚତୁର୍ଥ ବର୍ଷ ପ୍ରଥମ ସଂଖ୍ୟାରେ ପ୍ରକାଶିତ ତାଙ୍କର 'ଓଡ଼ିଶାରେ କୁଟୀରଶିଳ୍ପର ଆବଶ୍ୟକତା' ପ୍ରବନ୍ଧକୁ ଏହି ପ୍ରସଙ୍ଗରେ ନିଆଯାଇ ପାରେ । ଶଂସିତ ପ୍ରବନ୍ଧରେ ଭିକାରୀ ଚରଣ ଅତୀତ ଓଡ଼ିଶାରେ କୁଟୀରଶିଳ୍ପର ଅବସ୍ଥା କ'ଣ ଥିଲା ଓ କେଉଁ ପରିପ୍ରେକ୍ଷୀରେ ତାହାର ଅଧଃପତନ ଘଟିଅଛି ତାହାର ସଂକ୍ଷିପ୍ତ ସୂଚନା ଦେଇ ସାରିଲା ପରେ ବର୍ତ୍ତମାନ ପ୍ରସଙ୍ଗକୁ ଆସିଛନ୍ତି । ଓଡ଼ିଶାର ଅର୍ଥନୀତି ମୁଖ୍ୟତଃ ଗ୍ରାମୀଣ ହୋଇଥିବାରୁ ଓ ଓଡ଼ିଆମାନଙ୍କ ପାଖରେ ପୁଞ୍ଜିର ଅଭାବ ଥିବାରୁ ଓଡ଼ିଶାର ଆର୍ଥନୀତିକ ବିକାଶ ପାଇଁ କୁଟୀରଶିଳ୍ପର ବିକାଶ ଓ ପ୍ରସାର ଯେ ଏକାନ୍ତ ଆବଶ୍ୟକ ତାହା ସେ ପ୍ରତିପାଦନ କରିଅଛନ୍ତି । 'ଓଡ଼ିଶାର ଅର୍ଥନୈତିକ ବିପର୍ଯ୍ୟୟ' ପ୍ରବନ୍ଧରେ କୁଟୀରଶିଳ୍ପର ବିଲୋପ ଏହାର କାରଣ ବୋଲି ସୂଚନା ଦେଇଅଛନ୍ତି । ରାଜନୈତିକ ଆଭିମୁଖ୍ୟ ଦୃଷ୍ଟିରୁ ସେ ଉଦାରପନ୍ଥୀ ଓ ବ୍ରିଟିଶ ସପକ୍ଷବାଦୀ ହେଲେ ହେଁ ଆର୍ଥନୀତିକ ଦର୍ଶନ ଦୃଷ୍ଟିରୁ ସେ ଥିଲେ ସ୍ୱଦେଶୀ । ରାଧାନାଥଙ୍କ ସଂପର୍କରେ ଲିଖିତ 'ରାଧାନାଥ' ପ୍ରବନ୍ଧ ତାଙ୍କର ସାହିତ୍ୟଚର୍ଚ୍ଚା ସଂପର୍କିତ ପ୍ରବନ୍ଧର ଉଦାହରଣ ଭାବରେ ନିଆଯାଇପାରେ । ଏହି ପ୍ରବନ୍ଧରେ ପ୍ରାଚୀନ ଓଡ଼ିଆ ସପକ୍ଷରେ ମତାମତ ଦେବାକୁ ଯାଇ ସେ ଲେଖିଥିଲେ : "ଓଡ଼ିଆ ସାହିତ୍ୟ ବହୁ ପୁରାତନ ସାହିତ୍ୟ । ବହୁ ଶତାବ୍ଦୀ ପୂର୍ବେ ଓଡ଼ିଶାରେ ଓଡ଼ିଆ ସାହିତ୍ୟ ଯେତେଦୂର ଉତ୍କର୍ଷ ଲାଭ କରିଥିଲା, ବୋଧହୁଏ ଆଜି ପର୍ଯ୍ୟନ୍ତ ପୃଥିବୀର ସାହିତ୍ୟ ରାଜ୍ୟରେ ଅନ୍ୟ କୌଣସି ସାହିତ୍ୟ ସେତେଦୂର କରିପାରି ନାହିଁ । ଓଡ଼ିଆ ସାହିତ୍ୟର ପୁରାତନ ଗ୍ରନ୍ଥମାନଙ୍କ ଭଳି ଉତ୍କୃଷ୍ଟ, ଲେଖା ଅନ୍ୟ କୌଣସି ଭାଷାରେ ଏ ପର୍ଯ୍ୟନ୍ତ ଦେଖାଯାଇନାହିଁ ।" (ରାଧାନାଥ ଜୀବନୀ, ୧୦୪୫)

ମୋଟ ଉପରେ ଉତ୍କଳପ୍ରେମ ଓ ଓଡ଼ିଶାର ପ୍ରଗତି ଚିନ୍ତା ତାଙ୍କର ପ୍ରବନ୍ଧ ଗୁଡ଼ିକର ମୂଳସ୍ୱର । ଫଳରେ ତାଙ୍କର ଦୃଷ୍ଟିକୋଣଗତ ସଂକୀର୍ଣ୍ଣତା ଅନେକ ସମୟରେ ଚାକ୍ଷୁଷ ହୋଇପଡ଼େ । କିନ୍ତୁ ବିଷୟ ସହିତ ଏହି ଆବେଗିକ ସାଯୁଜ୍ୟ ତାଙ୍କର ପ୍ରବନ୍ଧଗୁଡ଼ିକୁ ଅନେକ ସମୟରେ ତଥ୍ୟଭାରରୁ ପାଠକକୁ ମୁକ୍ତି ଦିଏ ।

ଭିକାରୀ ଚରଣଙ୍କ ଗଦ୍ୟର ଭାଷା ସରଳ ଓ ତଥ୍ୟଭିତ୍ତିକ । ପ୍ରାଥମିକ ଶିକ୍ଷାଦାନ ବିଧି, ଏଣ୍ଡି ଚାଷ ଓ ଗୃହ ଶିଳ୍ପ ଆଦି ପୁସ୍ତକର ଭାଷା ସାଧାରଣ ଜନଗଣ, ପ୍ରାଥମିକ ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ଥିବାରୁ ଓ ବୈଷୟିକ ବିଦ୍ୟା ପାଇଁ ଉଦ୍ଦିଷ୍ଟ ଥିବାରୁ ଏହା ସ୍ୱତସ୍ଫୂର୍ତ୍ତ । ବର୍ତ୍ତମାନର ବୈଷୟିକ ପୁସ୍ତକ ସବୁ ଓଡ଼ିଆ ଭାଷାରେ ରଚନା ସମୟରେ ବା ଅନୁବାଦ ସମୟରେ ଏହି ଧାରା ଅବଲମ୍ବନ କଲେ ବେଶ୍ ଲୋକପ୍ରିୟ ହୋଇ ପାରନ୍ତା ।

ଭିକାରୀ ଚରଣଙ୍କ ଗଦ୍ୟଶୈଳୀ ସଂପର୍କରେ ସ୍ୱତନ୍ତ୍ର ଭାବରେ ଆଲୋଚନା କରାଯାଇପାରେ । ତାଙ୍କର କର୍ମଧାରା ପରି ତାଙ୍କର ଗଦ୍ୟଶୈଳୀ ଗତାନୁଗତିକ ପଥରୁ ଅଲଗା । ଓଡ଼ିଆ ଭାଷାରେ ବୈଦେଶିକ ଶବ୍ଦ ପ୍ରୟୋଗରେ ସେ ଅନେକ କୋହଳ ନୀତି ଅବଲମ୍ବନ କରିଛନ୍ତି । ଆମ ଭାଷାରେ ବହୁ ପ୍ରଚଳିତ ଇଂରାଜୀ ଶବ୍ଦକୁ ସେ ସିଧା ସଳଖ ଗ୍ରହଣ କରିନେଇଛନ୍ତି । ବ୍ୟାଗ, ଟେବୁଲ୍, ଷ୍ଟାଣ୍ଡ, ଫର୍ମା ଭଳି ଅନେକ ଶବ୍ଦକୁ ସେ ସ୍ୱାଭାବିକ ଭାବରେ ପ୍ରୟୋଗ କରିଛନ୍ତି । ଆବଶ୍ୟକ ସ୍ଥଳେ ସଂପୂର୍ଣ୍ଣ ପ୍ରତିଶବ୍ଦ ବନ୍ଧନୀ ମଧ୍ୟରେ ପ୍ରୟୋଗ କରି କିମ୍ବା କେତେକ ସ୍ଥାନରେ ଇଂରାଜୀ ଅକ୍ଷରରେ ତାର ପ୍ରତିଶବ୍ଦ ଲେଖିଛନ୍ତି । ବୈଷୟିକ ଶିକ୍ଷାକୁ ସର୍ବଜନୀନ କରିବାରେ ଏପରି ଶବ୍ଦ ପ୍ରୟୋଗର କିପରି ଆବଶ୍ୟକତା ରହିଛି ସେ ସଂପର୍କରେ ଆଲୋଚନା ହେବା ଆବଶ୍ୟକ ।

ଏ ସବୁ ଦୃଷ୍ଟିରୁ ଭିକାରୀ ଚରଣଙ୍କ ଗଦ୍ୟ ସଂପଦକୁ ମୂଲ୍ୟାୟନ କରାଯିବା ଆବଶ୍ୟକ ।



## ପରିଶିଷ୍ଟ-୧

# ଭିକାରୀ ଚରଣଙ୍କ ପରିବାର (ଆଗ ପଛ)

ସାଧୁଚରଣ ମହାନ୍ତି
ପିତେଇ ଦେଈ (ସ୍ତ୍ରୀ)

ପ୍ରାଣବନ୍ଧୁ ମହାନ୍ତି — ହାଡ଼ିବନ୍ଧୁ ମହାନ୍ତି — ବାଉରୀବନ୍ଧୁ ମହାନ୍ତି

(ଭିକାରୀ ଚରଣ) — କଣ୍ଡୁରୀଚରଣ — ବିଷ୍ଣୁଚରଣ — ସୁରେଖା ମହାନ୍ତି(ଶୁକ) — କୃଷ୍ଣ ଚରଣ ମହାନ୍ତି
(ଉମାଚରଣ ମହାନ୍ତି (ସ୍ୱାମୀ)

ଜଗନ୍ନାଥ ପଟ୍ଟନାୟକ (ମାମୁ)
ତୁଳସୀ ଦେଈ (ମାଇଁ)
ଭିକାରୀ ଚରଣ ପଟ୍ଟନାୟକ

| ବୈଦ୍ୟନାଥ | ନିଶାମଣି (ଝିଅ) | ସୀତାନାଥ | ପାରଶମଣି (ଝିଅ) | ଆନନ୍ଦ ମଣି (ଝିଅ) | ରଘୁନାଥ |
|---|---|---|---|---|---|
| ୧. ରମାକାନ୍ତ | ୧. ବ୍ରଜେନ୍ଦ୍ର କୁମାର | ୧. ସୁରେନ୍ଦ୍ର କୁମାର | ୧. କୁନି | ୧. ହେମନ୍ତ କୁମାର | ୧. କିରଣ ବାଳା |
| ୨. ମନୋରଞ୍ଜନ | ୨. ଉପେନ୍ଦ୍ର କୁମାର | ୨. ଜିତେନ୍ଦ୍ର କୁମାର | ୨. ଚୁନି | ୨. ବୁଲ୍ଲା | ୨. ରବୀନ୍ଦ୍ର କୁମାର |
| ୩. ଶ୍ୟାମାକାନ୍ତ | ୩. ଲକ୍ଷ୍ମୀମଣି | ୩. ଦେବେନ୍ଦ୍ର କୁମାର | | ୩. ନଳି | |
| | ୪. ରମାମଣି | | | ୪. ଅଲୁ | |
| | ୫. ଶ୍ୟାମାମଣି | | | | |

ପରିଶିଷ୍ଟ-୨

# ଭିକାରୀ ଚରଣଙ୍କ ରଚନାବଳୀ

| | |
|---|---|
| ୧. କଟକ ବିଜୟ (ନାଟକ) ପ୍ରଥମ ମୁଦ୍ରଣ-୧୯୦୧, ଦ୍ୱିତୀୟ ମୁଦ୍ରଣ | ୧୯୧୫ |
| ୨. ରତ୍ନମାଳୀ (ନାଟକ) | ୧୯୧୫ |
| ୩. ସଂସାରଚିତ୍ର (ନାଟକ) ପ୍ରଥମ ମୁଦ୍ରଣ-୧୯୧୫, ଦ୍ୱିତୀୟ ମୁଦ୍ରଣ | ୧୯୬୦ |
| ୪. ନନ୍ଦିକେଶ୍ୱରୀ (ନାଟକ) | ୧୯୧୫ |
| ୫. କରଣ ସାଆନ୍ତଙ୍କ ଜମ(କବିତା) | ୧୯୧୫ |
| ୬. ଭୋଟ ସୁମାରୀ (କବିତା) | ୧୯୧୫ |
| ୭. ଭୋଟ ଭିକାରୀ (କବିତା) | ୧୯୧୫ |
| ୮. ଭୋଟ (କବିତା) | ୧୯୧୫ |
| ୯. ମାନ୍ୟବର (କବିତା) | ୧୯୧୫ |
| ୧୦. ସାଆନ୍ତିଆ ବାହା (କବିତା) | ୧୯୧୫ |
| ୧୧. ଶ୍ୟାମଦାସ (କବିତା) | ୧୯୧୬ |
| ୧୨. ସୁଶୀଳା (ନାଟକ) | ୧୯୧୭ |
| ୧୩. ନେତା (କବିତା) | ୧୯୧୮ |
| ୧୪. ନୂଆ ଯୋଗୀ (କବିତା) | ୧୯୨୦ |
| ୧୫. ଅଦ୍ଭୁତ ଆଦର୍ଶ (ପ୍ରହସନ) (୧୯୦୯) | ୧୯୨୪ |
| ୧୬. ଗୀତ ଲହରୀ (ଗୀତି କବତା ସଙ୍କଳନ) | ୧୯୨୧ |
| ୧୭. ଯୌତୁକ (ପ୍ରହସନ) | ୧୯୨୪ |
| ୧୮. ରାଜା ପୁରୁଷୋତ୍ତମ (ନାଟକ) | ୧୯୨୫ |
| ୧୯. ପ୍ରାଥମିକ ଶିକ୍ଷାଦାନ ବିଧି (ଆଲୋଚନା ପୁସ୍ତକ) | ୧୯୩୪ |
| ୨୦. ଇଟାପୋଡ଼ା ଚୁଲି | ୧୯୩୫ |

୨୧. କୁଟୀରଶିଳ୍ପ ୧୯୩୫
୨୨. ସହଯୋଗ ୧୯୩୫
୨୩. ଚଷାଭାଇ (କବିତା) ୧୯୩୫
୨୪. କର୍ମସଙ୍ଗୀତ (ପ୍ରାଥମିକ ସ୍କୁଲ, ସାଧାରଣଙ୍କ ପାଇଁ) ୧୯୪୦
୨୫. ନିରୁପମା (ନାଟକ) ୧୯୫୨
୨୬. ଗୃହଶିଳ୍ପ (ପ୍ରଥମ ଭାଗରୁ ସପ୍ତମ ଭାଗ) ଦ୍ୱିତୀୟ ମୁଦ୍ରଣ ୧୯୫୩
୨୭. ହିତୋକ୍ତି ମୁକ୍ତାବଳୀ ୧୯୫୮
୨୮. ଅବସାଦ ବାଣୀ ୧୯୫୮
୨୯. ଭାଇ ଭାଇ ଡାକ ୧୯୫୮
୩୦. ମରିବା ଡର ୧୯୫୮
୩୧. ମା' ମାଉସୀ ୧୯୫୮
୩୨. ସ୍ୱଦେଶ ଦର୍ପଣ (ପ୍ରଥମ ଭାଗ, ଦ୍ୱିତୀୟ ଭାଗ) ୧୯୫୯
୩୩. ଶେଷକଥା ୧୯୫୯
୩୪. ପଞ୍ଚକଥା ୧୯୫୯
୩୫. କର୍ମକ୍ଷେତ୍ର (ନାଟକ) ୧୯୬୦
୩୬. ଏଣ୍ଡିଚାଷ ୧୯୬୦
୩୭. ସ୍ୱଜାତି ଗାରିମା (ମର୍ମବାଣୀ) ୧୯୬୦
୩୮. ସ୍ୱଜାତି ଗାରିମା (ଜାତିର ଗାରିମା) ୧୯୬୦
୩୯. ଏଣ୍ଡୁତେଣ୍ଡୁ ୧୯୬୦
୪୦. ମୂଳିଆ ଭାଇ ୧୯୬୦
୪୧. ପଚିଶ ମୁରବା ୧୯୬୦
୪୨. ଜୟ ଜଗନ୍ନାଥ ୧୯୬୦
୪୩. ଗୋମାତା ୧୯୬୦

# ସହାୟକ ଗ୍ରନ୍ଥ ସୂଚୀ


| | | |
|---|---|---|
| ୧. | ଗିରିଜାଶଙ୍କର ରାୟ | ଓଡ଼ିଆ ନାଟ୍ୟକଳା (୧୯୪୩) ପ୍ରଥମ ସଂସ୍କରଣ |
| ୧. | (ଡଃ) ଜାନକୀ ବଲ୍ଲଭ ମହାନ୍ତି(ଭରଦ୍ୱାଜ) | ନାଟ୍ୟକାର ଭିକାରୀ ଚରଣ-୧୯୬୩<br>ଓଡ଼ିଆ ସାହିତ୍ୟ ସମୀକ୍ଷଣ (ସଂପାଦନା-ଡଃ କୁଞ୍ଜବିହାରୀ ତ୍ରିପାଠୀ) ରେ ଅନ୍ତର୍ଭୁକ୍ତ<br>୨. ସୃଷ୍ଟି ଓ ସମୀକ୍ଷା-୧୯୬୪ (ପ୍ରଥମ ସଂସ୍କରଣ) ପ୍ରକାଶକ- ଦାସ ବ୍ରଦର୍ସ । |
| ୨. | (ଡଃ) ଜଗନ୍ନାଥ ମହାନ୍ତି | ୧. ଓଡ଼ିଆ ନାଟକ ଓ ଉପନ୍ୟାସ-୧୯୬୬ (ପ୍ରଥମ ସଂସ୍କରଣ) ପ୍ରକାଶକ- କଟକ ଟ୍ରେଡ଼ିଂ କମ୍ପାନୀ,<br>୨. ଚାରଣ କବି ଭିକାରୀ ଚରଣ ୧୯୬୬, ସମାଲୋଚନା ସଂଗ୍ରହ-୧୯୬୬ (ପ୍ରଥମ ସଂସ୍କରଣ)। ପ୍ରକାଶକ - ଓଡ଼ିଶା ବୁକ୍‌ଷ୍ଟୋର |
| ୪. | (ଡଃ) ନଟବର ସାମନ୍ତରାୟ | ଓଡ଼ିଆ ସାହିତ୍ୟର ଇତିହାସ-୧୯୬୪ |
| ୫. | (ଡଃ) ନୀଳାଦ୍ରୀଭୂଷଣ ହରିଚନ୍ଦନ | ଓଡ଼ିଆ ନାଟକରେ ଇତିହାସର ପଦଧ୍ୱନୀ-୧୯୮୨<br>ପ୍ରକାଶକ-ବିଦ୍ୟାପୁରି, କଟକ |
| ୬. | ଶ୍ରୀ ବୀରକିଶୋର ଦାସ | ନାଟ୍ୟକାର ଭିକାରୀ ଚରଣ<br>ସମାଲୋଚନା ସାହିତ୍ୟ-୧୯୬୮,<br>ପ୍ରକାଶକ-ସାଥୀମହଲ |
| ୭. | (ଡଃ) ଭାବଗ୍ରାହୀ ମିଶ୍ର | ୧. ସାମାଜିକ ନାଟକର ଆବିର୍ଭାବ, ଆଧୁନିକ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା-୧୯୬୨, (ଡଃ କୁଞ୍ଜବିହାରୀ ଦାଶଙ୍କ ସଂପାଦିତ)<br>୨. ନାଟ୍ୟକାର ଭିକାରୀ ଚରଣ<br>ସାହିତ୍ୟ ଦୃଷ୍ଟି - ୧୯୭୦ (ପ୍ରଥମ ସଂସ୍କରଣ)<br>ପ୍ରକାଶକ-ପ୍ରେଣ୍ଡସ ପବ୍ଲିଶର୍ସ, କଟକ । |

| | |
|---|---|
| ୮. (ଡଃ) ରତ୍ନାକର ଚଇନି | ଓଡ଼ିଆ ନାଟକର ଉଦ୍ଭବ ଓ ବିକାଶ-୧୯୯୪ (୧୯୭୯)<br>ବୁକ୍ସ ଏଣ୍ଡ ବୁକ୍ସ, କଟକ । |
| ୯. (ଡଃ) ହେମନ୍ତ କୁମାର ଦାସ | ୧. ଓଡ଼ିଆ ନାଟ୍ୟର ଉଦ୍ଭବ ଓ ବିକାଶ-୧୯୮୦<br>ପ୍ରକାଶକ-ପ୍ରେଣ୍ଡସ ପବ୍ଲିଶର୍ସ, କଟକ<br>୨. ଭିକାରୀ ଚରଣ ସ୍ମରଣେ ସମାଜ, ଡିସେମ୍ବର ୨୧, ୧୯୭୭ |
| ୧୦. ରାଷ୍ଟ୍ରଭାଷା ରଜତ ଜୟନ୍ତୀ ଗ୍ରନ୍ଥ (ହିନ୍ଦୀ) | ପ୍ରକାଶକ-ଉତ୍କଳ ପ୍ରାନ୍ତୀୟ ରାଷ୍ଟ୍ରଭାଷା ପ୍ରଚାର ସଭାଜ, କଟକ । |

